# ସଞ୍ଚିଲେ ବଞ୍ଚିବା












ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର
ଓଡ଼ିଶା, ଭୁବନେଶ୍ୱର

# ସଞ୍ଚିଲେ ବଞ୍ଚିବା


ଲେଖକ :

ଶ୍ରୀ ସୌରୀବନ୍ଧୁ କର

ପ୍ରଥମ ସଂସ୍କରଣ : ୧୯୯୭

ପ୍ରକାଶକ :

ଡ଼ଃ. ବିମଳେନ୍ଦୁ ମହାନ୍ତି
(ନିର୍ଦ୍ଦେଶକ)

ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର - ୭୫୧ ୦୦୧

ପ୍ରକାଶନ ସଂଖ୍ୟା :ଏସ୍. ଆର୍. ସି. - ୧୯୦-୨୨/୯୭

ମୁଦ୍ରଣ ସଂଖ୍ୟା : ଦୁଇ ହଜାର

ମୁଦ୍ରଣ : ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଦ୍ୱାରା ନିସ୍ୱାସ, ଭୁବନେଶ୍ୱର-୧୬ ରେ ମୁଦ୍ରିତ ।

ମୂଲ୍ୟ ଟ. ୩.୫୦

SANCHILE BANCHIBA

*Author :*
Sri Sauribandhu Kar

*First Edition :* 1997

*Publication No.* S.R.C.190 - 22/97

Copies Printed : 2,000

*Published by :*
Dr. B. Mohanty
*Director*
STATE RESOURCE CENTER
FOR ADULT EDUCATION
ORISSA, BHUBANESWAR - 1

*Printed* Through Orissa State Bureau of Text Book Preparation and Production, Bhubaneswar
at NISWASS, Bhubaneswar-16

*Price* : Rs. 3.50

ମଦନ ଗାଁକୁ ଆସିଛି । ତା' ଭଉଣୀର ବାହାଘର ଆଉ ସାତଦିନ ଅଛି । ସେ ପିଲା ଦିନରୁ ବାପ ଛେଉଣ୍ଡ । ଘରେ ମାଁ ଓ ସାନ ଭଉଣୀ ମମତା । ତାଙ୍କର ଜମି ନାହିଁ । କେବଳ ବାଡ଼ି ଗୁଣ୍ଠେ । ଗାଁଟି ଖରସୁଅଁ ନଈ କୂଳରେ । ଗାଁ ନାଁ ମଙ୍ଗଳପୁର । ଆଖ ପାଖରେ ଜଣା ଶୁଣା ଗାଁ ।

ମଦନ କଟକରେ କାମ କରେ । ଗାଁ ସ୍କୁଲରେ କିଛି ପାଠ ପଢ଼ିଥିଲା । ତା'ପରେ ସେ ଚାକିରୀ ଖୋଜିଥିଲା । କଟକରେ ମାଲଗୋଦାମରେ କାମ କରେ । ମାସକୁ ଦରମା ୬ ଶହ ଟଙ୍କା । ସାନ ଭଉଣୀ ମମତାର ବାହାଘର ହେବ । ସେଥିପାଇଁ ସେ ଗାଁକୁ ଆସିଛି ।



ଗାଁ ମଝିରେ ଶରତ ସହିତ ଦେଖାହେଲା । ଶରତ ତା' ସାଙ୍ଗରେ ପଢୁଥିଲା । ରାଜଧାନୀରେ ଚାକିରୀ କରେ । ତାଙ୍କ ବାପା ବାବାଜି ମହାପାତ୍ର । ଗାଁର ପୁରୁଣା ଜମିଦାର । ଅଚଳାଚଳ ସମ୍ପତ୍ତି ଥିଲା । ବଡ଼ ଜଣା ଶୁଣା ଘର ।

ଶରତକୁ ଦେଖି ମଦନ ଠିଆ ହେଲା । ଅନେକ ବର୍ଷ ପରେ ସେ ଶରତକୁ ଦେଖୁଛି । ହାତଯୋଡ଼ି ନମସ୍କାର କଲା । "ଶରତ ବାବୁ ! କେମିତି ଅଛନ୍ତି ? ସହରରୁ କେବେ ଆସିଲେ ?"

ଶରତ ମୁହଁରେ ସରସତା ନାହିଁ । ସେ ମଦନକୁ ଚାହିଁ ରହିଥାଏ । ମଦନ ତା'ର ହାବ ଭାବ ଦେଖି ଆବା କାବା । ଅଥଚ ମୁହଁରେ ହସ ନାହିଁ । କଥା ପଚାରିଲେ ବି ଉତ୍ତର ନାହିଁ ।

ମଦନକୁ ଚାହିଁ ଶରତ କହିଲା, ମଦନ ! କ'ଣ କହିବି । କାଲି ଆସିଛି ରାଜଧାନୀରୁ । ଭଉଣୀ ଦୀପାର ବାହାଘର । ଘରେ କାଣି କଉଡ଼ିଟିଏ ନାହିଁ । ମୋ ଦରମା ମୋତେ ନିଅଣ୍ଟ । ବାପା କିଛି ରଖିନାହାନ୍ତି । ବାହାଘର କିପରି ହେବ, ସେଇ ଚିନ୍ତା । ସେଥିକୁ ଯୌତୁକ ୫୦ ହଜାର । ବାପା ବିରକ୍ତ ହେଉଛନ୍ତି । ମୁଁ ସାଧୁ ମହାଜନ ଘରକୁ ଯାଉଛି । ପାଟ ଜମି ବନ୍ଧା ଦେବୁ । କିଛି ଟଙ୍କା ଆଣିବୁ । ମୁଁ ଶୁଣିଲି ମମତାର ବାହାଘର । କେମିତି କରିବ ? ଟଙ୍କା ପଇସା ଯୋଗାଡ଼ କଲଣି ? ଯୌତୁକ କେତେ ? ତୁମେତ ଗରିବ । କେଉଁଠୁ ଟଙ୍କା ଆଣିବ ? ମୁଁ ଏତେ ରୋଜଗାର କରି ମୋ ଭଉଣୀର ବିବାହ ପାଇଁ ଟଙ୍କା ଯୋଗାଡ଼ କରିପାରୁନି ।

ଶରତ କଥା ଶୁଣି ମଦନ ହସିଲା । କହିଲା, ଶରତ ବାବୁ ! ମୋର ଟଙ୍କା ପଇସା ଚିନ୍ତା ନାହିଁ । ବାହାଘର ପାଇଁ ଟଙ୍କା ସାଇତିଛି । ଯୌତୁକ ଦାବୀ ନାହିଁ । ଆସନ୍ତୁ; ଆମ ଘର ଆଡୁ ଟିକିଏ ବୁଲିଆସିବା ।

ମଦନ ଟଙ୍କା ରଖିଛି । ଭଉଣୀ ବାହାଘର କରିବ । ଶରତ ଚିହିଁକି ଉଠିଲା । ସେମାନେ ବହୁତ ଗରିବ ସେ ଜାଣେ । ତାଙ୍କ ମା ଭାରି ପରିଶ୍ରମୀ । ତେବେ ଏତେ ଟଙ୍କା କେଉଁଠୁ ପାଇଲେ ? ତାଙ୍କ କଥାଟା କେମିତି ଖଟକା ଲାଗିଲା । ସେ ମଦନ ସହିତ ତାଙ୍କ ଘରକୁ ଗଲା ।



ଶରତକୁ ଦେଖି ମଦନ ମା ଖୁସି ହେଲେ । ବାବୁଘର ପୁଅ । ସହରରେ ବଡ଼ ଚାକିରୀ । ବଡ଼ ଅଫିସର୍ । ତାଙ୍କ ଗାଁ ର ସମ୍ମାନ ସେ । ଝିଅକୁ ଆସନ ଦେବାକୁ କହିଲେ । ପାଚିଲା ଅମୃତଭଣ୍ଡା କାଟିଲେ । ପ୍ଲେଟରେ ଖାଇବାକୁ ଦେଲେ ।

ମଦନ କହିଲା, ଶରତ ବାବୁ ! ମୁଁ ଆପଣଙ୍କୁ ମୋ କଥା କହିବି । ବାହାଘର ପାଇଁ ଆମେ ଟଙ୍କା ସଞ୍ଚୟ କରିଛୁ । ଆମର ଏଇ ଘର ଓ ବାଡ଼ିକୁ ଦେଖନ୍ତୁ । ମା ଦିନସାରା ବାଡ଼ିରେ କାମ କରେ । ଘରେ ଦୁଇଟି ଗାଈ । କ୍ଷୀର ବିକ୍ରି କରୁ । ବାଡ଼ିରୁ ଫଳ ଓ ପରିବା ବିକ୍ରି ହୁଏ । ଆମର ଯେତିକି ଦରକାର ସେତିକି ଖର୍ଚ୍ଚ କରୁ ।

ଆମେ ଗରିବ । ଆମକୁ କିଏ ଟଙ୍କା ଦେବ ? ଏଇ କଥା ଭାବି କେବେଠାରୁ ସଞ୍ଚୟ କରୁଛୁ । ଚାଲୁନ୍ତୁ ; ଆମ ବାଡ଼ି ବୁଲି ଦେଖିବା ।

ମଦନ ଓ ଶରତ ବାଡ଼ିରେ ପଶିଲେ । ଛୋଟିଆ ବାଡ଼ିଟିଏ । ବାଡ଼ କଡ଼ରେ ନଡ଼ିଆ ଗଛ । ବାଡ଼ି ଭିତରେ ନାନା କିସମର ଫଳ ଗଛ । କଦଳୀ, ଅମୃତଭଣ୍ଡା ଧାଡ଼ି ଧାଡ଼ି । ଛୋଟ ଫୁଲ ବଗିଚା । ନାନା ଜାତିର ଫୁଲ ।

ମଦନ କହିଲା, ମା ଓ ଭଉଣୀ ଏଥିରେ କାମ କରନ୍ତି । ଗାଈ କ୍ଷୀର ଖାଇ ଯାହା ବଳେ ତାକୁ ବିକୁ । ଗୋବର ଖତ ହୁଏ । ତାକୁ ଜମିରେ ଦେଉ । ଏଇଟି ହେଉଛି ଗୋବର ଗ୍ୟାସ । ଘରେ ଆଲୁଅ ଜଳିବା ଓ ରୋଷେଇରେ ଲାଗେ ।''



ଏଇ ବାଡ଼ିରୁ ମାସକୁ ଆୟ ଚାରି ହଜାର ଟଙ୍କା । ନଡ଼ିଆ ଗଛରୁ ଅନେକ ଆମଦାନୀ ହୁଏ । ମା'କୁ ଯିବାକୁ ପଡ଼େନି । ବେପାରୀମାନେ ଏଠାକୁ ଆସନ୍ତି । ପରିବା, ନଡ଼ିଆ, କଞ୍ଚି, ଦଉଡ଼ି କିଣି ନିଅନ୍ତି । ଗାଁ ଲୋକେ ନଡ଼ିଆ ଜାଳ, ଘଷି ଗୁଣ୍ଡା ଆମ ଘରୁ କିଣନ୍ତି ।

ଏଇ ଲମ୍ବା ଘରକୁ ଦେଖନ୍ତୁ । ଏଠାରେ ସବୁ ସାଇତା ହୋଇ ରହେ । କୌଣସି ଜିନିଷ ନଷ୍ଟ ହୁଏ ନାହିଁ । ଶରତ ଘର ବୁଲି ଦେଖିଲା ।

ଦୁଇ ବଖରା ମାଟିଘର । ଲିପା ପୋଛା ହୋଇ ବେଶ୍ ପରିଷ୍କାର । କେଉଁଠି ଅଳନ୍ଧୁ ନାହିଁ । ଗାଈ ଗୁହାଳ ସଫା । ମାଛି, ମଶା ଗୋଟିଏ ଦେଖା ନାହିଁ । ସବୁ ସାଇତା ହୋଇ ରହିଛି । ଘର ଭିତରଟି ବେଶ୍ ସୁନ୍ଦର । କାନ୍ଥରେ ଯୀଶୁ, ବୁଦ୍ଧ, ରାମକୃଷ୍ଣ ବିବେକାନନ୍ଦ, ଗାନ୍ଧୀ ଓ ଗୋପବନ୍ଧୁଙ୍କର ଫଟୋଚିତ୍ର ।

ବିଛଣା ପରିଷ୍କାର । ମମତା ଶରତ ବାବୁଙ୍କୁ ନେଇ ସିଲେଇ ଘର ଦେଖାଇଲା । ଗାଁ ର ଝିଅମାନେ ସେଠାରେ ସିଲେଇ କରନ୍ତି । ସନ୍ଧ୍ୟାବେଳେ ସେମାନଙ୍କୁ ପାଠ ପଢ଼ାଏ ମମତା । ଘରୋଇ ଭାବରେ ବି. ଏ. ପରୀକ୍ଷା ଦେଇଛି ସେ ।

ଶରତ ଘର ସବୁ ବୁଲି ଦେଖିଲେ । ମଦନକୁ ପଚାରିଲେ । ମଦନ ! ତୁମ ଘର ଏକ ଆଦର୍ଶ ଘର । ଗାଁ ର ଝିଅ ବୋହୂଙ୍କୁ ପାଠ ପଢ଼ାଉଛ । ଏ ସବୁ କେମିତି କରି ପାରୁଛ ? ଟଙ୍କା କେମିତି ରଖିଲ ?

ମଦନ କହିଲା, ଶରତ ବାବୁ ! ଆଜି ପାଇଁ ସଞ୍ଚୟ, ଆଗାମୀ କାଲି ପାଇଁ ସୁରକ୍ଷା । ଏଇକଥା ଆମେ ମା'ଠାରୁ ଶିଖିଛୁ । ବସି ଖାଇଲେ ନଈବାଲି ସରେ । କଠିନ ପରିଶ୍ରମ ହିଁ ସବୁ ସଫଳତାର ଚାବିକାଠି । ସେଥିପାଇଁ ସମୟ, କାର୍ଯ୍ୟ ଓ ଅର୍ଥର ମୂଲ୍ୟ ବହୁତ ବେଶୀ ।

ମଦନ ସଞ୍ଜୟ ବିଷୟରେ କହିଲା । ମୁଁ ପ୍ରଥମେ ଆପଣଙ୍କୁ ଗପଟିଏ କହୁଛି । ଏହା ହେଉଛି ବିଶିଷ୍ଟ ବୈଜ୍ଞାନିକ ଡ଼କ୍ଟର ଗ୍ରାହମବେଲଙ୍କ କଥା । ସେ ପିଲାଦିନେ ବହି ବିକାଳୀ ଥିଲେ । ତାଙ୍କ ବହି ଦୋକାନରେ ଗୋଟିଏ ବିଜ୍ଞାପନ ପଟା ଝୁଲୁ ଥିଲା । ସେଥିରେ ଲେଖାଥିଲା, "ସଠିକ୍ ଦାମ୍ ।"

ଥରେ ଜଣେ ଗ୍ରାହକ ଆସିଲେ । ସେ ଗୋଟିଏ ବହି ନେବାକୁ ଠିକ୍ କଲେ । ବହିଟିର ଦାମ୍ ପଚାରିଲେ । ଡକ୍ଟର ବେଲ୍ କହିଲେ " ଦୁଇ ପାଉଣ୍ଡ । "

କିଛି ରିହାତି ନାହିଁ ? ଗ୍ରାହକ ପଚାରିଲେ ।

ଡ଼କ୍ଟର ବେଲ୍ ଲେଖାଥିବା ବିଜ୍ଞାପନ ପଟାକୁ ଅଙ୍ଗୁଳି ଦେଖାଇଲେ । ଠିକ୍ ଅଛି । ତୁମେ ମୋତେ ଶତକଡ଼ା ୫ ଭାଗ ଛାଡ଼କର । ଗ୍ରାହକ ଅନୁରୋଧ କଲେ ।

ବର୍ତ୍ତମାନ ବହିର ଦାମ୍ ୨ ପାଉଣ୍ଡ ୧୦ ପେନ୍ସ ।

ହେ ମହାଶୟ ! ଏ କ'ଣ କହୁଛ ?

ଆପଣ ୨ ପାଉଣ୍ଡ ଓ ୧ ଶିଲିଂ ଦିଅନ୍ତୁ । ନଚେତ୍ ବହିଟିକୁ ଥାକରେ ଥୋଇ ଦିଅନ୍ତୁ । ଗ୍ରାହମ ବେଲ୍ ଧୀର ଓ ଦୃଢ଼ଭାବରେ କହିଲେ ।

ଠିକ୍ ଅଛି । ତୁମେ ଗୋଟେ ଜିଦ୍‌ଖୋର ଲୋକ ।

ବୋକା ଲୋକ ! ଡ଼କ୍ଟର ବେଲ୍ ରାଗିଯାଇ କହିଲେ ।

ବହି ସହିତ ମୋ ସମୟର ପ୍ରତ୍ୟେକ ସେକେଣ୍ଡର ମୂଲ୍ୟ ଯୋଡ଼ି ଦେଲି । ବହିର ଦାମ୍ ଲେଖାଅଛି । ତୁମେ ଅଯଥାରେ ମୋର ସମୟ ନଷ୍ଟ କରୁଛ । ମୋର ସମୟ ବଡ଼ ମୂଲ୍ୟବାନ । ମୁଁ ଏହାକୁ ନଷ୍ଟ କରି ପାରିବି ନାହିଁ । ଏହାର ମୂଲ୍ୟ ବହିଦାମ୍ ସହିତ ମିଶିଯିବ ।

ଗ୍ରାହକ ବହିଦାମ ସହିତ ଅଧିକା ଦାମ୍ ଦେଲେ । ଚୁପ୍‌ଚାପ୍ ବହିଟିକୁ ଧରି ଚାଲିଗଲେ । ପରେ ଗ୍ରାହମ୍ ବେଲ୍ ପୃଥିବୀର ଜଣେ ଜଣାଶୁଣା ଲୋକ ହୋଇ ଉଠିଲେ । ସେ ସମୟକୁ ଠିକ୍ ଜଗୁଥିଲେ । ଏହା,କହି ମଦନ ଟିକିଏ ଚୁପ୍ ରହିଲା । ଶରତ ପଚାରିଲା, କାର୍ଯ୍ୟ କେମିତି ଆରମ୍ଭ କରିବା ?

## ପ୍ରଥମେ କିପରି ଆରମ୍ଭ କରିବା

ପ୍ରଥମେ କାମ ଆରମ୍ଭ କରିବା ଦରକାର । ଯେକୌଣସି କାମର ଆରମ୍ଭ କଠିନ । ଶିଳ୍ପୀ ଛବି ଅଙ୍କେ । ତୂଳି ଧରି କେଉଁ ରଙ୍ଗ ମିଶାଇବ ଭାବେ । କାମ ଆରମ୍ଭ ହେବା ସବୁଠାରୁ କଠିନ । ଆରମ୍ଭ ହେଲେ ଆଗକୁ କାମ କରିବାକୁ ମନ ଲାଗେ । ସଞ୍ଚୟ କରିବା ଠିକ୍ ସେହିପରି । ଖର୍ଚ୍ଚରୁ ଟଙ୍କାଟିଏ ରଖିଲେ ରଖିବାକୁ ମନ ହୁଏ ।

## ଠିକ୍ ଠିକ୍ ସମୟରେ କର

କାମ ଆରମ୍ଭ କରିବା ପାଇଁ ସମୟକୁ ଜଗିବ । ଟଙ୍କା ହାତରେ ରହେ ନାହିଁ । ବର୍ତ୍ତମାନ ଅଛି, ପୁଣି ବର୍ତ୍ତମାନ ନାହିଁ । ସମୟ ରହେ, ପୁଣି ସମୟ ଚାଲିଯାଏ । ସମୟ ସହିତ ତାଳଦେଇ କାମ କରିବା ଦରକାର । ସମୟକୁ ନ ଜଗିଲେ ସମୟ ଫେରି ଆସେ ନାହିଁ । ଦିନଟିଏ ଗଲେ, ସେ ଦିନଟି ଫେରେ ନାହିଁ ?

### ଦରକାରୀ କାମ କରିବା

ଯାହା ଦରକାର, ସେହି କାମକୁ କରାଯାଏ । ଅଦରକାରୀ କାମ ପାଇଁ ସମୟ ନଷ୍ଟ କରିବା ନାହିଁ । ଟଙ୍କା ଖର୍ଚ୍ଚ କରିବା ଦରକାର ନାହିଁ । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରଖି କାମ କରିବା ଦରକାର ।

### ସମୟକୁ କିପରି ସଞ୍ଚିବା

ପ୍ରଥମେ ପ୍ରତ୍ୟେକ ଦିନ ପାଇଁ ଯୋଜନା କରିବା । ସମୟକୁ ଠିକ୍ ନିରୂପଣ କଲେ ସୁଯୋଗ ମିଳେ । ସମସ୍ୟା ସମାଧାନ ହୁଏ । ପ୍ରତ୍ୟେକ ଦିନ କାମର ଚିଠା କରିବା । ଯାହା ଅତି ଜରୁରୀ ସେ କାର୍ଯ୍ୟକୁ ଅଗେ କରିବା । ଯଦି ଯୋଜନା ଠିକ୍ ଭାବରେ ହୁଏ, କାମ ଚଞ୍ଚଳ ସରେ ।

### ଏକ ମନ ହୋଇ କାମ କରିବା

କାମ ଠିକ୍ କରିବା ମୂଳରେ ରହିଛି ଏକାଗ୍ରତା । ଗୋଟିଏ ସମୟରେ ଅନେକଗୁଡ଼ିଏ କାମ କରି ହୁଏ ନାହିଁ । ଗୋଟିଏ କାମ ଶେଷ କରି, ଆଉ ଗୋଟିଏ ଆରମ୍ଭ କରାଯାଏ । କାମ କରିବା ମଝିରେ ବିଶ୍ରାମ ନେବା ଦରକାର । ଲଗାତର କାମ କଲେ ଶକ୍ତି କ୍ଷୟ ହୁଏ । ବିରକ୍ତ ଲାଗେ । କାମ କରିବାକୁ ମନ ହୁଏ ନାହିଁ । ମନ ଚଞ୍ଚଳ ହେଲେ କାମରେ ବ୍ୟାଘାତ ଘଟେ । କିଛି ସମୟ କାମରୁ ମନକୁ ହଟାଇ ନେବାକୁ ହୁଏ ।

କାମ କରିବା ସମୟରେ କାମକୁ ଭାଗଭାଗ କରିବା ସବୁଠାରୁ ଜରୁରୀ । ଆବଶ୍ୟକ ଓ ଅନାବଶ୍ୟକ ଇତ୍ୟାଦି ଭାବରେ କାମକୁ ବାଛିନିଅ । ଯାହା ବେଶି ଦରକାରୀ, ପ୍ରଥମେ ସେହି କାର୍ଯ୍ୟଟିକୁ କରିବା । ପ୍ରତ୍ୟେକ ଦିନ କାମ ସରିବା ପୂର୍ବରୁ ତା'ପର ଦିନ କାମ ପାଇଁ ଯୋଜନା କରିବା । ସମୟକୁ

ସେହି ଅନୁସାରେ ବାଣ୍ଟିଦେବା । କାଗଜ ପତ୍ରକୁ ସଜାଡ଼ି ରଖିବା । ଫଳରେ ତାପର ଦିନ କାମ ଠିକ୍ ଭାବରେ ହେବ ।

## ସଫଳତା ପାଇଁ ଭାବିବା ନାହିଁ

ସବୁକାମ ସଫଳ ହେବ, ଏହା ଭାବିବା ନାହିଁ। ବିଫଳତା ସଫଳତାର ପ୍ରଥମ ପାହାଚ । ଯେଉଁ କାର୍ଯ୍ୟ ଆଦୌ କରି ହେବ ନାହିଁ, ସେପରି କାର୍ଯ୍ୟ କରିବାକୁ ଚେଷ୍ଟା କରିବା ନାହିଁ । ମନା କରିଦେବା । ଅନ୍ୟକୁ ଆଘାତ ହେବ ଭାବି ମନା କରିବାକୁ କୁଣ୍ଠାବୋଧ କରିବା ନାହିଁ ।

## ବରାବର କାମକୁ ବଢ଼ାଅ ନାହିଁ

କାମଟିଏ ସରିଗଲେ, ଆଉ ଗୋଟିଏ କାମ କରିବାକୁ ଭାବିବା । ଅଳ୍ପ ସମୟରେ ବହୁତ କାମ କରିବାକୁ ଚେଷ୍ଟା କରିବା ନାହିଁ। ପ୍ରଥମେ ନିଜକୁ ସଂଯତ କରିବା । ନିଜ ଉପରେ ଶାସନ ନ ରହିଲେ ହେବ ନାହିଁ । ଅନୁଶାସନ କୁଅଭ୍ୟାସକୁ ବଦଳାଏ । ସମୟ ନଷ୍ଟ କରୁଥିବା କାର୍ଯ୍ୟ କ୍ୟାନ୍‌ସର ରୋଗ ପରି । ଥରେ ମାଡ଼ିଗଲେ ଏହା ଭଲ ହୁଏ ନାହିଁ। ମଣିଷ ଶରୀରର ଶକ୍ତି କ୍ଷୟ କରେ । ଅଦରକାରୀ କାମରେ ବିରକ୍ତି ଲାଗେ । ସେପରି କାମ କରିବା ନାହିଁ। ଆମେ ଯାହା କରୁଛେ, ତା'ର ତାଲିକା କରିବା । କିପରି ଭାବରେ କାମ କଲେ ଆନନ୍ଦ ମିଳିବ, ବିଚାର କରିବା । ସମୟକୁ ଠିକ୍ ବିନିଯୋଗ କରିବା । ସମୟାନୁବର୍ତ୍ତିତାକୁ ଅଭ୍ୟାସରେ ପକାଇବା ।

ସବୁ କାମ ନିଜେ କରି ପାରିବା ନାହିଁ। କିଛି କାମ ଅନ୍ୟକୁ କରିବାକୁ ଦେବା। ସେଥିପାଇଁ ଦକ୍ଷ ଲୋକଙ୍କୁ ବାଛିବା। ସେମାନଙ୍କୁ କାମ କରିବାକୁ ଅଧିକାର ଦେଇଦେବା । ଫଳରେ ଆମ ହାତରେ କାମ କରିବାକୁ ସମୟ ବଳିବ ।

## କାମର ଚାକର ହୁଅ ନାହିଁ

କାମ କରିବା ଦରକାର । କାମ ଜୀବନର ସବୁ କିଛି ନୁହେଁ । ପରିବାର, ବନ୍ଧୁ ଓ ସମାଜ ପାଇଁ ସମୟ ଦେବାକୁ ହେବ । ମଦ ନିଶା ମଣିଷକୁ ଶେଷ କରେ । କାମ ନିଶା ମଣିଷକୁ ଅସହାୟ କରି ପକାଏ । ପରିବାର ସହିତ କିଛି ସମୟ କଟାଇବା । ପରସ୍ପରଙ୍କୁ ସ୍ନେହ, ପ୍ରେମ ଓ ଭଲ ପାଇବା ଫଳରେ ମନରେ ଆନନ୍ଦ ଆସେ । ଅଧିକ କାମ କରିବାକୁ ସମୟ ମିଳେ । ଏକାଠି ମିଶିଲେ ସବୁ କାମ ସହଜ ହୁଏ ।

ଆମକୁ ମନେ ରଖିବାକୁ ହେବ, ଆଜି ହିଁ ଆମ ପାଇଁ । ଗତ କାଲି ଫେରିବ ନାହିଁ । ଆସନ୍ତା କାଲି ପାଇଁ ଭରସା ନାହିଁ । ଯାହା କରିବା କଥା, ତାହା ଆଜି ହିଁ କରିବା ।



ଗାଁର କେତେକ ଯୁବକ ମଦନ ଘରକୁ ଆସିଥାନ୍ତି । ସେମାନେ ମଦନ କଥା ଶୁଣନ୍ତି । ଶରତ ମଦନକୁ ପଚାରିଲେ, ସମୟ ବିଷୟରେ ବହୁତ କଥା କହିଲ । ଆଉ କିଛି କୁହ ।

ମମତା ଚା' ନେଇ ଆସିଲା । ଜଳଖିଆ ମଧ ଦେଲା । ଶରତ ମମତାକୁ ଚାହିଁ ପଚାରିଲେ, " ମମତା ! ତୁମେ ନିଜେ ପାଠ ପଢୁଛ । ଗାଁର ଝିଅ ବୋହୂଙ୍କୁ ପଢ଼ାଉଛ । ତୁମେ ଘରକୁ ବେଶ୍ ସୁନ୍ଦର କରି ରଖିଛ । ଏହା ସବୁ କିପରି ପାରୁଛ ? ତୁମେ ଆମକୁ କିଛି କୁହ । "

ଶରତ କଥା ଶୁଣି ମମତା ସେଇଠି ବସି ପଡ଼ିଲା । ସେ କହିଲା, ଶରତ ଭାଇ ! ସବୁଠାରୁ ମୂଲ୍ୟବାନ ହେଉଛି 'ସମୟ' । ଏହାକୁ କିପରି ଖର୍ଚ୍ଚ କରିବା, ତାକୁ ଜାଣିବା ଦରକାର । ପ୍ରଥମେ ଗୋଟିଏ କଥା ମନେ ରଖିବାକୁ ହେବ । ଆମେ କୁଆଡ଼େ ଯିବାକୁ ଚାହିଁଲେ, କିଛି କରିବାକୁ ଇଚ୍ଛା କଲେ, ଠିକ୍ ସମୟରେ କରିବା । ଆମେ ଆଦୌ ସମୟକୁ ଜଗୁ ନାହୁଁ । କେହି ଆମକୁ ସମୟ ବିଷୟରେ ଶିଖାଉ ନାହିଁ । ଯଦି ବର୍ଷା ଠିକ୍ ସମୟରେ ନ ହୁଏ, ତେବେ ଚାଷକାମ ହୋଇ ପାରିବ ନାହିଁ । ଯଦି ବିହନ ଠିକ୍ ସମୟରେ ବୁଣା ନ ଯାଏ, ତେବେ ଫସଲ ହେବ ନାହିଁ । ସୂର୍ଯ୍ୟ ଯଦି ଠିକ୍ ସମୟରେ ନ ଉଇଁବେ ତେବେ ଦିନ ରାତି ହେବ ନାହିଁ । ଏ ଜଗତ ଚଳିବ ନାହିଁ । ଆମେ ଜାଣିବା ଉଚିତ୍, ସବୁକାମ ଠିକ୍ ସମୟରେ କରିବାକୁ ହେବ ।

ଯେଉଁ କାମ କରିବାକୁ ଭାବିଛେ, ତାକୁ ବର୍ତ୍ତମାନ କରିବା । ଆମେ କ'ଣ କରୁଛୁ । ତାହା ବଡ଼ କଥା ନୁହେଁ । ଆମେ ନ କରିବା ଯୋଗୁ ଚିନ୍ତା ଘାରେ ।

ସବୁ କାମରେ ସମୟ ବଳିପଡ଼େ । ସେହି ବଳକା ସମୟକୁ କିପରି ଖର୍ଚ୍ଚ କରିବା ତାହା ଭାବିବା । ତାକୁ କାମରେ ଲଗାଇବାକୁ ଯୋଜନା କରିବା । ଆମର ସମୟ ଖୁବ୍ କମ୍ । ଦିନକ ଚବିଶ ଘଣ୍ଟା । ସେହି ଚବିଶ ଘଣ୍ଟାକୁ କେମିତି ଖର୍ଚ୍ଚ କରିବା । କେହି ବଳକା ସମୟରେ ବହି ପଢ଼ିପାରେ । ବହିରୁ ଜ୍ଞାନ ମିଳେ । ଯେଉଁ କାର୍ଯ୍ୟକୁ ପ୍ରଥମେ କରିବା କଥା, ତାହା ପ୍ରଥମେ କରିବା । ଦିନସାରା କିଛି ନ କରି ଖାଲି ବସି ହୁଏ ନାହିଁ, ଖାଲି ଖାଲି ବସିଲେ ବିରକ୍ତି ଲାଗେ । ମଣିଷ ଅଳସୁଆ ପାଲଟି ଯାଏ ।

ସମୟକୁ ଜଗିରଖି ଖର୍ଚ୍ଚ କରିବା । ଜୀବନ ସହଜ ଓ ସରଳ ହେବ । ଆମେ କେତେ କଥା ଭାବୁ । କେତେ କଥା କାମରେ କରୁ । କେତେ କଥା କହୁଁ । ଆମେ ଯାହା ଭାବୁ, କରୁ ଓ କହୁଁ ତାକୁ ସହଜ ଓ ସରଳ କରିଦେବା । ତେବେ ଜୀବନ ସୁନ୍ଦର ଦିଶିବ । ମୂଲ୍ୟବାନ ଲାଗିବ । ଆମେ ସରଳ ଜୀବନ ବିତାଇବା । ମନରେ କିଛି ଦ୍ୱନ୍ଦ୍ୱ ନଥିବ । ଆମେ ଯେତେ ସରଳ ଓ ସହଜ ହେବା, ଆମେ ସେତେ ସୁନ୍ଦର ଓ ପ୍ରାକୃତିକ ମନେ ହେବା । ସରଳ ଲୋକଟି ସାଧୁ ହୁଏ । ପବିତ୍ର ହୁଏ । ଆମେ ଆମ ଶରୀରରେ, ମନରେ, ଚିନ୍ତାରେ ସରଳ ହେବା ।

ଆମ ଜାତିର ପିତା ମହାତ୍ମା ଗାନ୍ଧୀ । କେତେ ସରଳ ! ଅଣ୍ଟୁତଳକୁ ଲୁଗା ପିନ୍ଧୁ ନ ଥିଲେ । ଚରଖାରେ ସୂତା କାଟୁଥିଲେ । ସନ୍ଧ୍ୟାବେଳେ ରାମଧୁନ ପ୍ରାର୍ଥନା କରୁଥିଲେ । ସେ ଲୋକମାନଙ୍କୁ ସ୍ନେହ ଓ ପ୍ରେମ କରୁଥିଲେ । ଲୋକମାନେ ଥିଲେ ତାଙ୍କ ପାଇଁ ସବୁ କିଛି । ତାଙ୍କଠୁ ଏହି ସରଳ କଥାଟି ଶିଖିବା । ଗାନ୍ଧିଜୀ ତିନିଗୋଟି ମାଙ୍କଡ଼ ମୂର୍ତ୍ତି ରଖିଥିଲେ ।



ଜଣେ ମୁହଁକୁ ହାତଦେଇ ବନ୍ଦ କରିଥିଲା । ଅନ୍ୟ ଜଣକ ଆଖିରେ ହାତ ଦେଇଥିଲା । ଆଉ ଅନ୍ୟ ଜଣକ ହାତ ଥିଲା କାନ ଉପରେ ।

ଜଣେ ପଚାରିଲେ, ଏମାନେ ଏପରି କାହିଁକି ବସିଛନ୍ତି ?'' ଗାନ୍ଧିଜୀ କହିଲେ, '' ମିଛ କଥା କୁହ ନାହିଁ । ମିଛ କଥା ଦେଖ ନାହିଁ । ମିଛ କଥା ଶୁଣ ନାହିଁ । ''

## ଠିକ୍ ମୁହୂର୍ତ୍ତକୁ ଜାଣିବା

ଥରେ ଜଣେ ଛାତ୍ର କୌଣସି ଏକ ପ୍ରତିଯୋଗିତାରେ ଭାଗନେବାକୁ ଯାଇଥିଲେ । ତାଙ୍କୁ ପ୍ରଶ୍ନ ହେଲା '' ଜୀବନରେ ଅଗକୁ ଯିବାକୁ ହେଲେ କ'ଣ ଦରକାର ? ''

''ବୁଦ୍ଧି? ଶକ୍ତି ? ଶିକ୍ଷା ?

ସେ ମୁଣ୍ଡ ହଲାଇ ହଁ କଲେ । କିନ୍ତୁ କହିଲେ ଏହାଠାରୁ ବଡ଼ କଥାଟିଏ ମଧ୍ୟ ରହିଛି । ତାହା ହେଉଛି " ଠିକ୍ ସମୟକୁ ଜାଣିବା । " ସେହି ଠିକ୍ ସମୟଟି କ'ଣ ?




**ସେହି ସମୟ**

କେଉଁ ସମୟରେ କାମ କରିବା ବା ନ କରିବା । କେଉଁ ସମୟରେ କହିବା ବା ଚୁପ୍ ରହିବା । ଯଦି ଆମେ ସେହି ସମୟଟିକୁ ଜାଣୁ, ତେବେ ଖୁସି ଓ ଆନନ୍ଦ ଜୀବନ ପାଇଁ ବ୍ୟସ୍ତ ହେବା ନାହିଁ । ତାହା ଆମ ସାମନା ଦେଇ ଅସିବ । ଆମ ଦୁଆର ମୁହଁରେ ପହଞ୍ଚିବ ।

**ନିଜ ସହିତ ନିଜେ ସନ୍ଧି କରିବା**

ରାଗ ବେଳେ, ଭୟରେ, କ୍ରୋଧରେ,ଘୃଣାରେ, ବିରକ୍ତ ହେବା ବେଳେ କଥା କହିବା ନାହିଁ । ଚୁପ୍‌ଚାପ୍ ରହିବାକୁ ଚେଷ୍ଟା କରିବା । ସମସ୍ତେ ରାଗି ପାରିବେ । ତାହା ଅତି ସହଜ । କିନ୍ତୁ ଠିକ୍ ସମୟରେ, ଠିକ୍ କାରଣ ପାଇଁ ରାଗିବା ସମସ୍ତଙ୍କ ଦ୍ୱାରା ହୁଏ ନାହିଁ ।

ତେଣୁ ନିଜ ଭାବନାକୁ ବଢ଼ାଇବା । ଭବିଷ୍ୟତ ଏକ ବନ୍ଦ ହୋଇଥିବା ବହି ନୁହେଁ। ଯାହା ଭବିଷ୍ୟତକୁ ଘଟିବ, ତାହା ବର୍ତ୍ତମାନ ଉପରେ ନିର୍ଭର କରେ । ଆଗକୁ ଚାହିଁବା ସଫଳତା ପାଇଁ ଦରକାର । ଧୈର୍ଯ୍ୟ ଧରିବା, ଧୈର୍ଯ୍ୟଧରି କାର୍ଯ୍ୟ କରିବା । ସଫଳତା ଆପେ ଆପେ ଆସିବ । ଅଧୈର୍ଯ୍ୟ ହୋଇ କାର୍ଯ୍ୟ କଲେ ବିଫଳତା ଆସେ ।

ସୁଯୋଗ ସବୁବେଳେ ଆସେ ନାହିଁ। ସୁଯୋଗକୁ ଧୈର୍ଯ୍ୟଧରି କାମରେ ଲଗାଇବା । ଏ ବିଷୟରେ ଗୋଟିଏ ସୁନ୍ଦର ଗପ ଅଛି । ତାକୁ ଶୁଣିବା ।-

ସ୍ୱାମୀ ବିବେକାନନ୍ଦ ଏ ଗପଟିକୁ କହିଥିଲେ । ଗପଟିର ନାଁ ତିନିଟୋଟି ବର । ଗୋଟିଏ ଗାଁ ରେ ପିଲାଟିଏ ଥିଲା । ତା' ନାଁ ହାରୁ । ହାରୁ ଗେଡ଼ା ଥିଲା । ତା'ର ନାକଟି ଛୋଟ । ସେ ଭାରି ଗରିବ । ତା'ର ଭଲ ପୋଷାକ ନ ଥିଲା । ତା' ବିଧବା ମା' ତା' କଥା ବୁଝୁଥିଲା ।

ସେ କଠିନ ପରିଶ୍ରମ କରେ । କିନ୍ତୁ ଅଳ୍ପ ରୋଜଗାର କରେ । ସେ ଆଦୌ ପାଠପଢ଼ି ନ ଥିଲା । ମା' ସେଥିରେ ଘର ଚଳାଏ । ହାରୁ ଖୁସିରେ ଥାଏ । ଗାଁ ପିଲାମାନେ ତାକୁ ଚିଡ଼ାନ୍ତି । କେବେ କେବେ ମାଡ଼ ଦିଅନ୍ତି । ତା' ଛୋଟ ନାକକୁ ଉପହାସ କରନ୍ତି ।

ଦିନ ଗଡ଼ି ଚାଲିଲା । ହାରୁ ବଡ଼ ହେଲା । ତା' ମା' ମରିଗଲା । ହାରୁକୁ ବଡ଼ ବାଧିଲା । ସେ ମା' ବିଛଣା ପାଖରେ ବସି କାନ୍ଦିଲା ।

ମୋ କଥା କିଏ ବୁଝିବ । ମୋତେ କିଏ ରାନ୍ଧିଦେବ । ପଡ଼ୋଶୀମାନେ ଆସିଲେ । ତାକୁ ବୋଧ ଶୋଧ କଲେ । ଗାଁ ର ମୁଖିଆମାନେ ତା' କଥା ଭାବିଲେ ।

ତାକୁ ଡାକି କହିଲେ, ହାରୁ ! ତୋ ମା' ମରିଗଲା । ତୋତେ ଦେଖିବାକୁ କେହି ନାହିଁ । ତେଣୁ ତୁ ବାହା ହୋଇ ପଡ଼ । କ'ଣ କହୁଛୁ ?

ହାରୁକୁ କଥାଟା ବେଶ୍ ଭଲ ଲାଗିଲା । ସେ ଭାବିବ ବୋଲି କହିଲା ।

ମା' ଘରେ ନାହିଁ । ତାକୁ ଏକୁଟିଆ ଲାଗିଲା । ସେ ନିଜ ମନକୁ କହିଲା. ମୁଁ ବାହା ହେବି ।

ସେ ବାରଣ୍ଡାରେ ବସି ଭାବିଲା ।

ଦିନସାରା ତା ବାହାଘର ବିଷୟରେ ହାରୁ ଭାବିଲା ।

ଗୋଟିଏ ସୁନ୍ଦରୀ ଝିଅ ବାହା ହେବ ବୋଲି ମନେ ମନେ ଭାବିଲା, କିନ୍ତୁ ତାକୁ କିଏ ଝିଅ ଦେବ ? ଯଦି ତା' ନାକକୁ ଦେଖି ସେ ହସେ । ନାଁ ସୁନ୍ଦରୀ ଝିଅ ବାହା ହେବ ନାହିଁ ।

ସେ ଏମିତି ଭାବି ଚାଲିଲା । ବହୁତ ଭାବି ଶେଷକୁ ବାହା ହେବାକୁ ସ୍ଥିର କଲା ।

ତା' ପରଦିନ ଗାଁ ମୁଖିଆଙ୍କୁ ଦେଖାକଲା ।

ମୁଁ ବାହା ହେବାକୁ ରାଜି । କିନ୍ତୁ ଝିଅଟିର ନାକ ଛୋଟ ହୋଇଥିବ- ସେ କହିଲା ।

ହାରୁ ! ଏ ପରି କାହିଁକି କହୁଛୁ । ମୁଖିଆ ପଚାରିଲେ ।

ନ ହେଲେ ସେ ମୋ ନାକ ଦେଖି ହସିବ - ହାରୁ କହିଲା ।

ମୁଖିଆ ତା' କଥା ଶୁଣି ଖୁସି ହେଲେ । ଛୋଟ ନାକ ଥିବା ଝିଅ ଖୋଜିବାକୁ ରାଜି ହେଲେ ।

ପାଖ ଗାଁରେ ଝିଅଟିଏ ମିଳିଲା । ହାରୁ ବାହା ହୋଇ ଖୁସି ହେଲା । ଗାଁ ପିଲାମାନେ ପରିହାସ କଲେ । ନାକ ନ ଥିବା ସ୍ୱାମୀ ସ୍ତ୍ରୀ । ହାରୁ ସେମାନଙ୍କୁ ଏପରି ନ କହିବାକୁ ଅନୁରୋଧ କଲା । ମୁଖିଆଙ୍କୁ ଜଣାଇଲା । କିନ୍ତୁ ଫଳ କିଛି ହେଲା ନାହିଁ ।

ଦିନେ ରାତିରେ ସେ ଭାବିଲା   କେହି କ'ଣ ମୋତେ ସାହାଯ୍ୟ କରିବେ ନାହିଁ । ମୁଁ ଏମିତି ଲୋକହସା ହେବାକୁ ଚାହେଁ ନାହିଁ । ହଠାତ୍ ତା' ମନକୁ ଗୋଟିଏ ବୁଦ୍ଧି ଜୁଟିଲା ।

ଈଶ୍ୱର ଏ ଶରୀର ଦେଇଛନ୍ତି । ମୁଁ ତାଙ୍କୁ ପ୍ରାର୍ଥନା କରିବି । ଏହାର ସମାଧାନ ସେ କରିବେ । ଏହା ଛଡ଼ା ଅନ୍ୟ ଉପାୟ ନାହିଁ ।

ସେ ନିଜ ସ୍ତ୍ରୀଙ୍କ ପାଖକୁ ଡାକିଲା ।

ତୁମେ ଘରେ ଥାଅ । ମୁଁ ବାହାରକୁ ଯାଉଛି, ନ ଫେରିବାଯାଏ ଘର କେଉଁଠିକି ଯିବ ନାହିଁ ।

ସେ ଜଙ୍ଗଲକୁ ଚାଲିଗଲା । ଗୋଟିଏ ବଡ଼ ଗଛତଳେ ଆଖିବୁଜି ବସିଲା ।

ଭଗବାନ ସାହାଯ୍ୟ କରିବାକୁ ପ୍ରାର୍ଥନା କଲା ।

ଦିନ ଗଲା ; ରାତି ଆସିଲା ।

ତାର ନିଷ୍ଠା ଦେଖି ଠାକୁରେ ତାକୁ ଦେଖାଦେଲେ । ହାରୁ ଠାକୁରଙ୍କୁ ଦେଖି ଖୁସି ହେଲା । ସେ ନମସ୍କାର କଲା । ହାତ ଯୋଡ଼ି କହିଲା, ପ୍ରଭୁ ! ମୋତେ ଦୟା କରନ୍ତୁ । ମୋର ପ୍ରାର୍ଥନା ଶୁଣନ୍ତୁ ।

ଠାକୁର ହସିଲେ । ତାକୁ ତିନୋଟି ବର ଦେଲେ । ତିନୋଟି କାଠି ବି ଦେଲେ । ଏହାକୁ ତିନିଥର ପକାଇବାକୁ କହିଲେ । ଯାହା ମାଗିବ ତାହା ପାଇବ ।

ହାରୁ ଖୁସିରେ ଘରକୁ ଦୌଡ଼ି ଦୌଡ଼ି ଗଲା ।

ସେ ଦୁଆର ଖୋଲିବାକୁ ସ୍ତ୍ରୀକୁ ଡାକିଲା ।

ତା' ସ୍ତ୍ରୀ କବାଟ ଖୋଲି ଦେଲା । ହାରୁ ରାଜାଙ୍କ ପରି ଯାଇ ବିଛଣାରେ ବସିଲା ।

ତା' ସ୍ତ୍ରୀ ତା'ର ହାବ ଭାବ ଦେଖି ଡରିଗଲା ।

ମୋ ପାଇଁ ପାଣି ଗିଲାସେ ଅଣ । ସେ ଆଦେଶ ଦେଲା । ତା' ସ୍ତ୍ରୀ ସେଠାରୁ ଆଦୌ ଘୁଞ୍ଚିଲା ନାହିଁ । ସେ ତାକୁ କଟମଟ କରି ଚାହିଁଲା ।

ଘଟଣା କ'ଣ । ଚଞ୍ଚଳ ମୋ ପାଇଁ ପାଣି ଗିଲାସେ ଆଣ ।

ତୁମର ଏ କ'ଣ ହୋଇଛି ? ତୁମକୁ ଏପରି କିଏ କଲା ? ପାଗଳଙ୍କ ପରି କାହିଁକି ହେଉଛ ?

ଚୁପ୍ ହୁଅ । କଥା ବନ୍ଦ କର । – ହାରୁ ଧୀରେ କହିଲା ।

ମୋ କଥା ଶୁଣ । ମୁଁ ବଡ଼ ଭାଗ୍ୟବାନ ।

ସେ ସବୁ କଥା ଗୋଟିଏ ଗୋଟି କରି କହିଲା ।

ଏହା ଶୁଣି ତା' ସ୍ତ୍ରୀ ଖୁସିରେ ଡିଆଁ ମାରିଲା । ସେ ତା' ନିକଟକୁ ଆସି କହିଲା, ଧନ ପାଇଁ ଏହି କାଠିକୁ ଫିଙ୍ଗ ।

ନା, ନା, ମୋର ଧନ କ'ଣ ହେବ । ଆମର ନାକ ଦରକାର । ଆମ ନାକ କଦାକାର । ସମସ୍ତେ ଦେଖି ହସୁଛନ୍ତି । ପ୍ରଥମେ ସୁନ୍ଦର ନାକ ପାଇଁ କାଠି ପକାଇବା ।

ତା' ସ୍ତ୍ରୀ କିନ୍ତୁ ଧନ ଚାହୁଁଥିଲା । ସେ ତା' ହାତକୁ ଧରି କାଠିକୁ ଛଡ଼ାଇଲା ।

ଏଥିରେ ହାରୁ ରାଗିଗଲା । ସେ ତା' ହାତକୁ ଛଡ଼ାଇ ଅଧୈର୍ଯ୍ୟ ହୋଇ କାଠିକୁ ପକାଇଲା । କହିଲା, ଆମ ଦୁହିଁଙ୍କର ସୁନ୍ଦର ସୁନ୍ଦର ନାକ ହେଉ । କେବଳ ନାକ ।

ହଠାତ୍ ଦେହ ସାରା ନାକ ହୋଇଗଲା । ସୁନ୍ଦର ସୁନ୍ଦର ନାକ ।

ହାରୁ ତା' ସ୍ତ୍ରୀକୁ ଚାହିଁଲା । ତୁମେ କେତେ ଖରାପ ଦେଖାଯାଉଛ । ତୁମେ ମଧ୍ୟ । ତାର ସ୍ତ୍ରୀ କହିଲା ।

ସେମାନେ ଭୟରେ ଡରିଗଲେ ।

ପୁଣି ଥରେ କାଠି ପକାଇବାକୁ ଠିକ୍ କଲେ । ନାକ ଫେରି ପାଇବାକୁ କାଠି ପକାଇବେ ।

କାଠି ପଡ଼ିଲା । ସବୁ ନାକ ଚାଲିଯାଉ ।

ସତକୁ ସତ ନାକ ଚାଲିଗଲା । ପୁରୁଣା ଛୋଟ ନାକ ବି ରହିଲା ନାହିଁ ।

ସେମାନେ ବେଶ୍ କୁରୂପ ଦେଖାଗଲେ ।

ହାରୁ ଏହା ଦେଖି ଦୁଃଖିତ ହେଲା । ସେ ତା' ସ୍ତ୍ରୀକୁ କହିଲା " ବର୍ତ୍ତମାନ କ'ଣ କରିବା ? କେବଳ ଦୁଇଟି ସୁନ୍ଦର ନାକ ପାଇଁ କାଠି ପକାଇବା କି ?

ସ୍ୱାମୀ, ଯଦି ସୁନ୍ଦର ନାକ ପାଇବା, ତେବେ ଲୋକେ ପଚାରିବେ ।

ଆମ କଥା ଶୁଣି ସେମାନେ ହସିବେ । ତିନି ଗୋଟି ବର ପାଇଁ ଆମେ କିଛି କରି ପାରିଲେ ନାହିଁ । ଧନୀ ହେଲେ ବି ନାକ ନ ଥିଲେ ଲୋକ ହସିବେ । କେବଳ ଶେଷ ଥରଟି ରହିଛି । ତେଣୁ ଆମେ ଆମ ପୂର୍ବ ନାକକୁ ମାଗିବା ।"

ହାରୁ ସୁଯୋଗ ହରାଇ ଥିବାରୁ ଦୁଃଖ କଲା । ଭାବିଲା, ସତରେ ମୁଁ କେତେ ବୋକା । ଅଧୈର୍ଯ୍ୟ ହୋଇ ସବୁ ହରାଇଲି । ସେ ଆଣ୍ଠୁମାଡ଼ି ଭଗବାନଙ୍କୁ ପ୍ରାର୍ଥନା କଲା ।

ହେ ଭଗବାନ ! ଆମର ଛୋଟ ନାକକୁ ଫେରାଇ ଦିଅ ଏହା କହି କାଠି ପକାଇଲା ।

ସେମାନେ ନାକ ଫେରି ପାଇଲେ । ଆମେ ଏହି ଗପଟିରୁ କ'ଣ ଶିଖିଲେ । ଜୀବନରେ ଅନେକ ସୁଯୋଗ ଆସେ । ତାକୁ ଠିକ୍ ଭାବରେ ବିନିଯୋଗ କରିବା ଉଚିତ୍ ।

## ଧନ ସଞ୍ଚୟ କରିବା କିପରି

ଧନ ସଞ୍ଚୟ କଷ୍ଟ । ନିୟମିତ ଧନ ସଞ୍ଚିବା ପାଇଁ ମିତବ୍ୟୟୀ ହେବା ଦରକାର । ଯେଉଁମାନେ ଧନ ସଞ୍ଚୟ କରିଛନ୍ତି, ତାଙ୍କୁ ପଚାରିବା । ସେମାନେ କିଛି ନା କିଛି ସଞ୍ଚୟ କରନ୍ତି । ମାସକ ଆୟରୁ ପ୍ରଥମେ ନିଜ ପାଇଁ ଟଙ୍କା କାଟି

ରଖିବା । ଯଦି ପ୍ରଥମେ ସଞ୍ଚୟ ପାଇଁ ରଖି ନ ହେବ, ତେବେ ଅନ୍ୟ ଉପାୟ କ'ଣ ଭାବିବା ।

## ବଳକା ଟଙ୍କା

ଆମେ ହାଟକୁ ଯାଉଁ, ସଉଦା କିଣୁ । କିଛି ପଇସା ବଳିପଡ଼େ । ଖୁଚୁରା ପଇସା । ଖୁଚୁରା ପଇସାକୁ ଗୋଟିଏ ଡବାରେ ରଖିଦେବା । ପ୍ରତ୍ୟେକ ଦିନ କିଛି କିଛି ଖୁଚୁରା ମିଶିଲେ ପଇସାର ପରିମାଣ ବଢ଼ିବ ।

ହଠାତ୍ କେଉଁଠୁ କେଉଁଠୁ ଟଙ୍କା ମିଳିଯାଏ । ଦୋକାନରୁ ମିଳେ । ପନିପରିବାରୁ ମିଳେ । ଚାଷ କାମରୁ ମିଳେ । ଆମେ ଯାହା ଆଶା କରିନେ, ହଠାତ୍ ତାହା ମିଳିଯାଏ । ସେହି ହଠାତ୍ ମିଳିବା ଧନକୁ ସଞ୍ଚୟ କରାଯାଇପାରେ ।

## ଅଭ୍ୟାସ ବଦଳାଇବା

କେତେଗୁଡ଼ିଏ ଅଭ୍ୟାସ ରହିଛି, ସେହି ଅଭ୍ୟାସକୁ ବଦଳାଇବା । ଆମେ ବିଡ଼ି, ସିଗାରେଟ୍, ପାନ, ଗୁଡ଼ାଖୁ ନିତି ବ୍ୟବହାର କରୁ । ସେ ଅଭ୍ୟାସ ଛାଡ଼ିଦେବା । ସେହି ବଳକା ଅର୍ଥକୁ ସାଇତି ରଖିବା ।

ପ୍ରତି ମାସରେ ଓଷା ଓ ପର୍ବ ପଡ଼େ । ଆମେ ଅନେକ ଖର୍ଚ୍ଚ ଏହି ଦିନରେ କରୁ । ତାକୁ କମାଯାଇପାରେ । ଧୋବାକୁ ଲୁଗା ଦେଉ । ବାରିକ ଦାଢ଼ି ଖିଅର କରେ । ଏଇମିତି ଅନେକ ଛୋଟ ଛୋଟ କାମ । ତାକୁ ଆମେ ଅନ୍ୟ ଦ୍ୱାରା କରାଉ । ତାକୁ ନିଜେ କଲେ କ୍ଷତି ନାହିଁ । ସେ ଟଙ୍କାକୁ ସଞ୍ଚୟ କରିପାରିବା ।

## ଲୁଚିଥିବା ଅର୍ଥ

ପିଲାମାନଙ୍କୁ ହାତ ଖର୍ଚ୍ଚ ଦେଉ । କେହି କେହି ନିଜ ବହି ଭିତରେ ଏହାକୁ ଲୁଚାଇ ରଖନ୍ତି । ଘରେ ସ୍ତ୍ରୀଲୋକେ ଏଠି ସେଠି ଟଙ୍କା ରଖିଦିଅନ୍ତି ।

ତାକୁ ଭୁଲିଯାଆନ୍ତି । ସେପରି ଅର୍ଥକୁ ସଞ୍ଚୟ କରି ପାରିବା । ପ୍ରତ୍ୟେକ ମାସରେ ବ୍ୟାଙ୍କ ଖାତାରୁ ମାସକିଆ ଖାତାକୁ କିଛି ଟଙ୍କା ପଠାଇପାରିବା ।

**ମୋଟ ଜମା**

ମାସିକିଆ ଖର୍ଚ୍ଚ ଅଟକଳ କରିବା ବେଳେ ହିସାବ କରିବା । କେଉଁଥିରୁ କେତେ କମାଯାଇପାରେ । ପ୍ରତ୍ୟେକ ମାସ କିଛି କିଛି କାଟି ରଖିଲେ, ତିନି ମାସ ପରେ ବେଶ୍ କିଛି ଅର୍ଥ ମିଳିଯାଏ । ତା' ଉପରେ ସୁଧ ମିଳେ ।

ହଠାତ୍ କିଛି ଟଙ୍କା ଦରକାର ହୋଇଥାଏ । ରୋଗରେ ପଡ଼ିଗଲେ, ଚାକିରୀ ଚାଲିଗଲେ, ଅଘଟଣ ଘଟିଲେ, ଟଙ୍କାର ଆବଶ୍ୟକ ପଡ଼େ । ଯେଉଁମାନେ ନିଜେ ଆତ୍ମନିଯୁକ୍ତି ଯୋଜନାରେ ରୋଜଗାର କରନ୍ତି, ସେମାନଙ୍କ ପାଇଁ ବେଶି ଦରକାର ହୁଏ । ସବୁବେଳେ ରୋଜଗାର ହୁଏ ନାହିଁ । ବର୍ଷାଦିନ, ଛୁଟିଦିନ, ବନ୍ଦ ଦିନରେ ରୋଜଗାର ନ ଥାଏ । ଏ କଥାକୁ ନଜରରେ ରଖି ଖର୍ଚ୍ଚକୁ ସେହି ଅନୁଯାୟୀ କରିବାକୁ ହୋଇଥାଏ ଏବଂ ସଞ୍ଚୟ କରି ରଖାଯାଏ ।

ଏଥିପାଇଁ ବିଭିନ୍ନ ସଞ୍ଚୟ ଯୋଜନା ରହିଛି । ଗାଁ ଡାକଘରଠାରୁ ସରକାରୀ କ୍ଷେତ୍ର ବ୍ୟାଙ୍କ ଓ ଜୀବନବୀମାରେ ଜମା ଲଗାଯାଇପାରେ । ଟଙ୍କାକୁ କିପରି ଜମା ରଖିବା, ମୁଁ ସେ ବିଷୟରେ ପରେ କହିବି ।

ବର୍ତ୍ତମାନ ପରିବାରକୁ କିପରି ଋଣରୁ ରକ୍ଷା କରିବି, ସେ ବିଷୟରେ ଜାଣିବା ।

ମମତା କଥା ଶୁଣି ଶରତ ଓ ଅନ୍ୟ ଯୁବକମାନେ ପଚାରିଲେ, ଭଉଣୀ ! ଋଣ କରିବା ଓ ଋଣରୁ କିପରି ମୁକ୍ତ ହେବା ସେ ବିଷୟରେ କୁହ । ଏହା ଆମେ ଜାଣିବାକୁ ଚାହୁଁଛୁ ।

ଏହା ଶୁଣି ମମତା କହିଲା, ପ୍ରଥମେ ମନେ ରଖିବା ଯେ ଆମେ ଭଲ ଭାବରେ ବଞ୍ଚିବାକୁ ଚାହୁଁ । ଏଥିପାଇଁ ପରିବାରର ସମସ୍ତଙ୍କର ଦାୟିତ୍ୱ ରହିଛି । ଋଣ ମୋର ବା ତୁମର ନୁହେଁ । ଏହା ଆମର ଋଣ । ଆମେ ଟିକିଏ ଭଲରେ ବଞ୍ଚିବାକୁ ଚାହୁଁ ।

ପ୍ରଥମେ ଯାହା ରୋଜଗାର କରୁଛେ, ତାକୁ ଜାଣିବା, ପରିବାରର ଆୟ ବ୍ୟୟ ଅଟକଳ କରିବା । ତାକୁ ' ବଜେଟ୍ ' କୁହାଯାଏ । ମାସକର ରୋଜଗାରରୁ ପ୍ରକୃତ କେତେ ଟଙ୍କା ଘର ଖର୍ଚ୍ଚ ପାଇଁ ରହେ, ତାକୁ ଜାଣିବା ।

ଘରେ ପ୍ରତ୍ୟେକ ଦିନ ଖର୍ଚ୍ଚ ହୁଏ । କିଏ କେତେ ଖର୍ଚ୍ଚ କଲା, ତା'ର ହିସାବ ରହେ ନାହିଁ । ପରିବାରର ସମସ୍ତେ ଜଣା ଅଧିକେ ଖର୍ଚ୍ଚ କରନ୍ତି । ତାହାର ଏକ ଠିକ୍ ହିସାବ ରଖିବା ଉଚିତ୍ । ପିଲାମାନେ ଦିନକୁ ଯାହା ଖର୍ଚ୍ଚ କରନ୍ତି, ତା'ର ଗୋଟି ଗୋଟି ହିସାବ ଲେଖିବା ଦରକାର ।

ବର୍ଷକୁ ଯେତିକି ରୋଜଗାର କରୁଛେ, ତା'ର ୧ ୫ ଭାଗ କରଜ କରି ପାରନ୍ତି । ଯଦି ଋଣ ଆୟର ଚାରି ଭାଗରୁ ଏକ ଭାଗ ହୁଏ, ତେବେ ଆର୍ଥିକ ବୋଝ ବଢ଼ିଯିବ ।

ବେଳେବେଳେ ବାକିରେ ଆମେ ଜିନିଷ କିଣୁ । ତା' ଛଡ଼ା ମାସକୁ ମାସ କିସ୍ତିରେ ଜିନିଷ ମିଳେ । ଏହାର ସୁଧ ବହୁତ ବେଶୀ । ଏଥିପ୍ରତି ସାବଧାନ ରହିବା । କିସ୍ତିରେ ଜିନିଷ କିଣିବା, ବାକିରେ କିଣିବା ଅନୁଚିତ୍ । ଏଥିରେ ବିପଦ ବେଶୀ । ଏଥିପାଇଁ ସାବଧାନ ରହିବାକୁ ହେବ । ଖର୍ଚ୍ଚକୁ ସୀମିତ କରିବାକୁ ହେବ । ଆମେ ପରିଶ୍ରମ କରି ଟଙ୍କା ରୋଜଗାର କରୁ । ଖର୍ଚ୍ଚ କରିବାବେଳେ ସାବଧାନ ରହିବା ଉଚିତ ।

ଟଙ୍କା କିପରି ସଞ୍ଚୟ ହୁଏ, ସେ ବିଷୟରେ ଜାଣିବା । ମାସକ ଖର୍ଚ୍ଚ ପରେ କିଛି ଟଙ୍କା ବଳକା ରହେ । ତାକୁ ଘରେ ସାଇତି ନରଖି, ବ୍ୟାଙ୍କ ବା ଡାକଘରେ ରଖିବା । ସେଥିରୁ ସୁଧ ମିଳିବ । ଜମା ବଢ଼େ । ବ୍ୟାଙ୍କ ସଞ୍ଚୟ କରିବାର ମନୋବୃତ୍ତିକୁ ବଢ଼ାଏ । ସାମାଜିକ ଉନ୍ନତି ପାଇଁ ଲୋକମାନଙ୍କୁ ଆର୍ଥିକ ସହାୟତା ଦିଏ । ତ୍ୟାଗ ଭାବନା ନେଇ ଲୋକଙ୍କର ସେବା କରେ ।

ଆମ ଗାଁ ଶେଷରେ ବ୍ୟାଙ୍କ ଅଛି । ଆମେ ଆସନ୍ତାକାଲି ସେଠାକୁ ଯିବା । ବ୍ୟାଙ୍କରେ କିପରି ଜମା ନିଆଯାଏ, କ'ଣ କ'ଣ ଜମା ଯୋଜନା ରହିଛି, କେତେ ସୁଧ ମିଳେ ତାହା ବୁଝିବା ।

ତା'ପର ଦିନ ଦଶଟାବେଳେ ଶରତ ଓ ଅନ୍ୟ ଯୁବକମାନେ ବ୍ୟାଙ୍କରେ ପହଞ୍ଚିଲେ । ମଦନ ଓ ମମତା ସେଠାରେ ଅପେକ୍ଷା କରିଥିଲେ । ମଦନ କହିଲା, ଶରତ ବାବୁ ! ଭିତରକୁ ଯିବା । ସେମାନେ ବ୍ୟାଙ୍କ ଭିତରକୁ ଗଲେ ।



ପରିଚାଳକ, ମଦନ ଓ ମମତାର ଜଣାଶୁଣା । ସେମାନେ ବ୍ୟାଙ୍କ ବିଷୟରେ ପରିଚାଳକଙ୍କଠାରୁ ଜାଣିବାକୁ ଚାହିଁଲେ ।

ପରିଚାଳକ ସେମାନଙ୍କୁ ବ୍ୟାଙ୍କ ଭିତରକୁ ନେଇ କହିଲେ, "ବ୍ୟାଙ୍କରେ ନାନା ପ୍ରକାର କାମ । ଏ ହେଉଛି କାଉଣ୍ଟର । ଏଠାରେ ଅନେକ ପ୍ରକାର ଜମା ଯୋଜନା ରହିଛି । ସାଧାରଣ ଲୋକଙ୍କୁ ସଞ୍ଚୟ ଯୋଜନା ପ୍ରତି ଆକୃଷ୍ଟ କରିବା ପାଇଁ ସଞ୍ଚୟ ଜମା, ଧାରାବାହିକ ଜମା, ଦୀର୍ଘ ମିଆଦି (ଫିକ୍ସଡ୍) ଜମା ଅଛି ।

**ସଞ୍ଚୟ ଜମା ( ସେଭିଙ୍ଗସ୍ ବ୍ୟାଙ୍କ )**

ସଞ୍ଚୟ ଜମାରେ ପ୍ରଥମେ ସବୁଠାରୁ କମ୍ ପାଞ୍ଚ ଟଙ୍କା ଦେଇ ଖାତା ଖୋଲି ହେବ । ଖାତା ଖୋଲିବା ବେଳେ ଜମାକାରୀଙ୍କୁ ଗୋଟିଏ ଫଟୋ ଦେବାକୁ ହୁଏ । ଜମା କରିବା ପାଇଁ ନିର୍ଦ୍ଦିଷ୍ଟ ଫର୍ମ ରହିଛି । ଜମାକାରୀର ଦସ୍ତଖତକୁ ସାଇତି ରଖାଯାଏ । ଜଣେ ଜମାକାରୀ ସବୁଦିନ ଟଙ୍କା ଜମା କରିପାରେ । ପ୍ରତି ଛଅମାସରେ ଏହା ଉପରେ ସୁଧ ମିଳେ । ମାସର ଦଶ ତାରିଖଠାରୁ ଶେଷ ତାରିଖ ପର୍ଯ୍ୟନ୍ତ ନିୟମିତ ଜମା ଉପରେ ସୁଧ ହିସାବ ହୁଏ ।

ଟଙ୍କା ଉଠାଇବା ଫର୍ମରେ ସାଧାରଣତଃ ଟଙ୍କା ଉଠାଯାଏ । ତାହାକୁ ଚେକ୍ କହନ୍ତି । ମାସରେ ଆଠ ଥରରୁ ଦଶଥର ଟଙ୍କା ଉଠାଯାଏ ।

ବ୍ୟାବସାୟିକ ସଂସ୍ଥାମାନେ ଜମାଖାତା ଖୋଲି ପାରିବେ ନାହିଁ । ଦଶବର୍ଷର ପିଲାମାନେ ଜମାଖାତା ଖୋଲି ପାରିବେ । ସେମାନେ ନିଜେ ଟଙ୍କା ଉଠାଇ ପାରିବେ । ଜମା କରି ପାରିବେ । ଜମା ଖାତା ଖୋଲିବା ଅର୍ଥ ବଳକା ଟଙ୍କାକୁ ସାଇତି ରଖିବା । ଯେତିକି ଦରକାର, ସେତିକି ନେଇ ଖର୍ଚ୍ଚ କରିବା । ସବୁ ଟଙ୍କା ଘରେ ରଖି ଖର୍ଚ୍ଚ କରିବା ନାହିଁ । ଆବଶ୍ୟକତାକୁ ଚାହିଁ ଟଙ୍କା ଉଠାଇବା ।

## ସ୍ୱଳ୍ପ ଓ ଦୀର୍ଘମିଆଦୀ ଜମା

ଏହି ଜମାକୁ '' ଟର୍ମ ଡିପୋଜିଟ୍'' କୁହାଯାଏ । ଏଥିପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ରହିଛି । ସମୟ ସରିଗଲେ ଏହାକୁ ଉଠାଯାଏ । ଏହା ସବୁଠାରୁ କମ୍ ପନ୍ଦରଦିନ ପାଇଁ କରାଯାଇପାରେ । ଏହି ଜମାକୁ କ୍ରମାଗତ ଭାବେ କିଛି ବର୍ଷ ରଖାଯାଏ ।

ଏହି ଜମାର ଆଉ ଏକ ଜମା ହେଉଛି ଧାରାବାହିକ ଜମା । ଯାହାକୁ '' ରିକରିଂ ଡିପୋଜିଟ୍'' କୁହାଯାଏ । ପ୍ରତିମାସ ଏକ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ରଖାଯାଇଥାଏ । ବର୍ଷକଠାରୁ ଦଶବର୍ଷ ପର୍ଯ୍ୟନ୍ତ ଏଥିରେ ଜମା କରାଯାଏ । ସାଧାରଣତଃ ପିଲାଙ୍କ ନାମରେ ଏହାକୁ ରଖାଯାଏ । ଏହା କ୍ରମଶଃ ବଢ଼ିଚାଲେ । ପ୍ରତିମାସ ଖର୍ଚ୍ଚରୁ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ଅଲଗା କରି ଏହି ଜମାରେ ଲଗାଇବା । ମୋଟା ଟଙ୍କା ଶେଷକୁ ମିଳିବ । ବିବାହ, ବ୍ରତ ବା ଅନ୍ୟ ଯେକୌଣସି ମୋଟା ଖର୍ଚ୍ଚ ପାଇଁ ଏହା ଲାଗିପାରେ ।

## ଫିକ୍ସଡ୍ ଡିପୋଜିଟ୍

ଆଉ ଏକ ପ୍ରକାର ଜମା ରହିଛି । ତାକୁ କୁହାଯାଏ ସ୍ଥାୟୀ ଜମା । ଏହି ଜମା ପାଇଁ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ଦରକାର । ଏହା ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ ରହେ । ପ୍ରତ୍ୟେକ ତିନିମାସରେ ସୁଧ ମିଳେ । ଛଅ ମାସରେ ମଧ ଏହା ଉପରେ ସୁଧ ମିଳେ । ସର୍ବ ନିମ୍ନ ପଚାଶ ଟଙ୍କା ରହିପାରେ । ଅଧିକା ଟଙ୍କା ମଧ୍ୟ ରଖି ପାରିବା । ସମୟ ସୀମା ପରେ ଜମା ରହିପାରେ । ନିଜ ଦରକାର ବେଳେ ଟଙ୍କାକୁ ଉଠାଇ ପାରିବା ।

ଏହି ଜମା ନାବାଳକ ନାଁରେ ରଖି ପାରିବା । ବ୍ୟକ୍ତି ବିଶେଷ ଜମା କରି ପାରିବେ । ଅନୁଷ୍ଠାନ ଜମା ରଖିପାରିବେ । ଜଣକ ନାମରେ ଜମା

ରହିପାରେ । ଦୁଇଜଣ ବା ତା'ଠାରୁ ଅଧିକ ନାଆଁରେ ରଖାଯାଇପାରେ । ଜମା ସମୟ ପୂରିଗଲେ, ଜଣେ ଉଠାଇ ପାରିବ । ଏକାଠି ଜମାକାରୀମାନେ ଉଠାଇ ପାରିବେ ।

ଏଥିରେ ମନୋନୟନର ବ୍ୟବସ୍ଥା ରହିଛି । ଜମାକାରୀ ହଠାତ୍ ମରିଯାଇପାରେ । ତେବେ ଜମା ଟଙ୍କା ମନୋନୀତ ଲୋକକୁ ମିଳେ ।

ଜମାକାରୀ ନିଜ ନାମ ସହିତ ଅନ୍ୟ ନାମ ଯୋଡ଼ିପାରେ । ଏଥିଯୋଗୁ ଜମା ପରିମାଣ ବଦଳେ ନାହିଁ । ସମୟ ଓ ସୁଧହାର ସେଇଆ ରହେ ।

ଆବଶ୍ୟକ ହେଲେ ଏଥିରୁ ଋଣ ନେଇ ପାରିବା । ଋଣ ଉପରେ ସୁଧ ବହୁତ କମ୍ । କେବଳ ୨ ଟଙ୍କା ଅଧିକ । ଏ ପ୍ରକାର ଋଣ ସହଜରେ କରିପାରିବା । ହଠାତ୍ ଟଙ୍କା ପାଇବାକୁ ଏ ଋଣ କରାଯାଏ । ଅନ୍ୟ ଋଣଠାରୁ ଏହି ଋଣର ସୁଧ କମ୍ । ଏହାକୁ ସମୟ ସୀମା ପୂର୍ବରୁ ଉଠାଇ ନେଇ ପାରିବା । ଏଥିରେ ବେଶି ସୁଧ କଟେ ନାହିଁ ।

## କ୍ଷୁଦ୍ର ଓ ଦୈନିକ ଜମା

ସାଧାରଣ ଗରିବ ଲୋକଙ୍କ ପାଇଁ ଏହି ଜମା ରହିଛି । ସେମାନେ ବ୍ୟାଙ୍କକୁ ଆସିବାକୁ ସମୟ ନାହିଁ । ବ୍ୟାଙ୍କ ଜମାକାରୀର ଦୁଆରେ ପହଞ୍ଚେ । ପାଞ୍ଚ ଟଙ୍କା ଦେଇ ଏ ଜମା ଖୋଲିପାରିବା ।

ଅତି କମ୍ ଟଙ୍କାଟିଏ ଏଥିରେ ରଖିପାରିବା । ଏଥିପାଇଁ ଏଜେଣ୍ଟ ଅଛନ୍ତି । ସେମାନେ ଘରକୁ ଘର ଯାଆନ୍ତି । ଦୋକାନକୁ ଦୋକାନ ଯାଆନ୍ତି । ଏହି ଜମା ସଂଗ୍ରହ କରନ୍ତି ।

ଏଜେଣ୍ଟମାନଙ୍କୁ କମିଶନ ମିଳେ । ଦୈନିକ ଜମା ଗରିବ ଲୋକଙ୍କର ଦରକାରରେ ଆସେ । ପ୍ରତ୍ୟେକ ଦିନ ସେମାନେ କିଛି ସଞ୍ଚୟ କରନ୍ତି ।

ମୂଲିଆ, ରିକ୍‌ସାବାଲା, ଛୋଟ ଦୋକାନୀ, ପାନବାଲା ଓ ଅନ୍ୟମାନେ ଏହା ଦ୍ୱାରା ଉପକାର ପାଆନ୍ତି । ସବୁଦିନ କାମ ମିଳେ ନାହିଁ । କିଛି ବଳକା ଟଙ୍କାକୁ ସାଇତାଯାଏ । ଘରେ ରଖିଲେ ଖର୍ଚ୍ଚ ହୋଇଯାଏ । ଜମା ଥିଲେ ଦରକାର ବେଳେ କାମରେ ଲଗାଇ ପାରିବା ।

**ଚାଲୁଖାତା**

ଦୋକାନୀ, ବ୍ୟବସାୟୀ ଚାଲୁଖାତା ଖୋଲନ୍ତି । ଏଥିରେ ସୁଧ ମିଳେ ନାହିଁ । ବ୍ୟବସାୟ ପାଇଁ ଋଣ ମିଳେ । ଅନ୍ୟାନ୍ୟ ସୁବିଧା ମିଳେ ।

ବ୍ୟାଙ୍କଗୁଡ଼ିକ ଲୋକମାନଙ୍କଠାରୁ ଜମା ନିଅନ୍ତି । ସେହି ଅର୍ଥକୁ ରାଜ୍ୟର ଉନ୍ନତି ମୂଳକ କାର୍ଯ୍ୟରେ ଲଗାନ୍ତି । ସେଥିରୁ ସେମାନେ ସୁଧ ପାଆନ୍ତି ।

ଦେଶରେ ଅନେକଗୁଡ଼ିଏ ବ୍ୟାଙ୍କ ରହିଛି । ଏଥିରୁ କେତେକ ଜାତୀୟ କରଣ ବ୍ୟାଙ୍କ । ଅନ୍ୟ କେତେକ ବେସରକାରୀ ବ୍ୟାଙ୍କ । ଜମା ଟଙ୍କା ରଖିଲେ ପାସ ବୁକ୍ ମିଳେ । ଚେକ୍ ଜରିଆରେ ଟଙ୍କା ଉଠାଯାଏ । ଦରକାରବେଳେ ଋଣ ଦିଆ ହୁଏ ।

ଜମା ଉପରେ ଋଣ କମ୍ ସୁଧରେ ମିଳେ । ଏହି ଋଣକୁ ଆସ୍ତେ ଆସ୍ତେ ଶୁଝାଯାଏ । ଜମା ଉପରେ ଋଣ ନେବା ସବୁଠାରୁ ସହଜ ।

ଅନେକ ପ୍ରକାର ଋଣ ରହିଛି । ଗାଁ ଲୋକେ ସୁବିଧାରେ ଋଣ ନିଅନ୍ତି । ଗ୍ରାମ ବିକାଶ ପାଇଁ ବ୍ୟାଙ୍କ କାର୍ଯ୍ୟ କରେ । ସେ ଋଣଗୁଡ଼ିକ ହେଲା – (୧) କୃଷି ଋଣ, (୨) ଛୋଟ ବ୍ୟବସାୟୀ ଋଣ । (୩) କ୍ଷୁଦ୍ର ଉଦ୍ୟୋଗ,

(୪) ଆତ୍ମ ନିଯୁକ୍ତି, (୫) ଶିକ୍ଷା, (୬) ଗୃହନିର୍ମାଣ, (୭) ଆଦିବାସୀ ଓ ହରିଜନମାନଙ୍କ ପାଇଁ ଅଳ୍ପ ସୁଧରେ ଋଣ, (୮) ଅନ୍ୟାନ୍ୟ ଋଣ ।

ପରିଚାଳକ ସେମାନଙ୍କୁ ବ୍ୟାଙ୍କ ବୁଲାଇ ଦେଖାଇଲେ । ସେମାନେ ଅଳ୍ପ ଅଳ୍ପ ଟଙ୍କାକୁ କିପରି ଜମା କରି ପାରିବେ, ଜାଣିଲେ । ଫେରିବା ସମୟରେ ମମତା କହିଲା, ଶରତ ଭାଇ ! କେବଳ ବ୍ୟାଙ୍କରେ ଟଙ୍କା ରହେ ନାହିଁ । ଡାକଘରେ ମଧ୍ୟ ସଞ୍ଚୟ କରାଯାଏ ।

ଆମ ଗାଁରେ ଡାକ ଘର ଅଛି । ଦୁଇତିନି ଗୋଟି ଗାଁକୁ ନେଇ ଗୋଟିଏ ଡାକଘର । ଚାଲନ୍ତୁ, ଡାକଘରକୁ ଯିବା ସେଠାରେ ଜମା କରିବା ପାଇଁ କି ସୁବିଧା ଅଛି ଦେଖିବା ।

ସେମାନେ ଡାକଘରେ ପହଞ୍ଚିଲେ ।



ଡାକବାବୁ ମମତାଙ୍କୁ ଦେଖି ଖୁସି ହେଲେ । ତୁମେ ଆମ ଗାଁ ଡାକଘରର ସମ୍ମାନ । ମମତା ! ତୁମ ଯୋଗୁ ଆମ ଡାକଘର ସଞ୍ଚୟ କ୍ଷେତ୍ରରେ ସଫଳତା ପାଇଛି । ସମଗ୍ର ଓଡ଼ିଶାରେ ପ୍ରଥମ ହୋଇଛି ।

ଏଇ କପ୍‌ଟିକୁ ଦେଖ । ଏହାକୁ ଆମ ରାଜ୍ୟ ସରକାର ଦେଇଛନ୍ତି । ଗାଁ ସାରା ସମସ୍ତଙ୍କୁ ବୁଝାଇ ଜମା ଖାତା ଖୋଲାଇଛ । କୁହ, ମୁଁ କ'ଣ କରିପାରିବି ।

ମମତା ଖୁସିରେ କହିଲା, ଆମ ଗାଁ ସଞ୍ଚୟ ଯୋଜନାରେ ପ୍ରଥମ ହୋଇଛି । ବଡ଼ ଖୁସିର ଖବର । ଏଥିପାଇଁ ଗୋଟିଏ ସଭା କରିବା । ଲୋକମାନଙ୍କୁ ଧନ୍ୟବାଦ ଦେବା ।

ଶରତ ଭାଇ ସହରରେ ରୁହନ୍ତି । ଗାଁକୁ ଆସିଛନ୍ତି । ଆମ ଗାଁରେ କି କି କାମ ହେଉଛି, ବୁଲି ଦେଖୁଛନ୍ତି । ସେ ଜମା ବିଷୟରେ ଜାଣିବାକୁ ଚାହୁଁଛନ୍ତି ।

ମୁଁ ତାଙ୍କୁ ବ୍ୟାଙ୍କ ନେଇଥିଲି । ଏବେ ଏଠାକୁ ଆସିଛୁ । ଆପଣ ଜାତୀୟ ସଞ୍ଚୟ ଯୋଜନା ବିଷୟରେ କିଛି ବୁଝାଇ କୁହନ୍ତୁ ।

କେନ୍ଦ୍ର ସରକାରଙ୍କର ଗୋଟିଏ ଜାତୀୟ ସଞ୍ଚୟ ସଙ୍ଗଠନ ରହିଛି । ଏହି ସଙ୍ଗଠନ ସଞ୍ଚୟ ବିଷୟରେ ଲୋକମାନଙ୍କୁ ବୁଝାନ୍ତି । ଏହାର ବିଭିନ୍ନ ପ୍ରକାର ଜମା ରହିଛି । ସେ ଜମା ବିଷୟରେ ଆସନ୍ତୁ ଜାଣିବା

**( କ ) ଇନ୍ଦିରା ବିକାଶ ପତ୍ର :** ଏହି ବିକାଶ ପତ୍ର ପାଇଁ ଦରଖାସ୍ତ ନାହିଁ । ତିନ ପ୍ରକାର ବିକାଶ ପତ୍ର ଅଛି । ଦୁଇଶହ ଟଙ୍କା, ପାଞ୍ଚଶହ ଟଙ୍କା, ଏକ ହଜାର ଟଙ୍କା । ଏହି ବିକାଶ ପତ୍ର ସବୁ ଡାକଘରେ ମିଳେ । ସାଢ଼େ ପାଞ୍ଚ ବର୍ଷରେ ଟଙ୍କା ଦୁଇଗୁଣ ହୁଏ । ଜଣେ ଅନ୍ୟ ଜଣକୁ ବିକାଶ ପତ୍ର ବିକି ଦେଇପାରେ ।

**( ଖ ) କିଶାନ ବିକାଶ ପତ୍ର** : ଏହି ଜମା ପାଇଁ କିଛି ସୀମା ନାହିଁ। ଶହେ, ପାଞ୍ଚଶହ, ପାଞ୍ଚ ହଜାର ଓ ଦଶ ହଜାର ଟଙ୍କାର ବିକାଶ ପତ୍ର ମିଳେ। ଏହି ଟଙ୍କା ପାଞ୍ଚବର୍ଷରେ ଦୁଇଗୁଣ ହୋଇଯାଏ। ସମୟ ପୂରିବା ପୂର୍ବରୁ ଜମା ଟଙ୍କା ଉଠାଇଲେ ମଧ୍ୟ ସୁଧ ମିଳେ। ସମସ୍ତେ ଏହି ବିକାଶ ପତ୍ରକୁ କିଣିପାରିବେ।

**( ଗ ) ଜାତୀୟ ସଞ୍ଚୟ ସ୍କିମ୍ ୧୯୯୨**: ଏଥିରେ ଅତିକମ୍ ଶହେଟଙ୍କା ଜମା ରଖାଯାଏ। ଶହେର ଗୁଣିତକ ଯେତେଇଚ୍ଛା ଟଙ୍କା ଏଥିରେ ରଖି ପାରିବା। ଅତି କମ୍‌ରେ ବର୍ଷକ ପାଇଁ ଜମା ରଖାଯାଏ। ଏହି ଜମା ଉପରେ ବର୍ଷକୁ ଶହେ ଟଙ୍କାରେ ୧୧ ଟଙ୍କା ସୁଧ ମିଳେ। ଚାରିବର୍ଷ ପରେ ଏହି ଟଙ୍କାକୁ ଉଠାଇପାରିବା।

**( ଘ ) ଡାକଘର ସସିକିଆ ଜମା** ଅତିକମ୍‌ରେ ୬ହଜାର ଟଙ୍କା ରଖାଯାଏ। ବର୍ଷକୁ ଶହେ ଟଙ୍କାରେ ୧୩ ଟଙ୍କା ସୁଧ ମିଳେ। ୧୨ ହଜାର ଟଙ୍କା ରଖିଲେ ମାସକୁ ମାସ ସୁଧ ମିଳେ। ବର୍ଷଶେଷକୁ ଶହେଟଙ୍କାରେ ୧୦ ଟଙ୍କା ବୋନସ୍ ମିଳେ। ଏହା ଛଅ ବର୍ଷରେ ପୂରିଯାଏ। ବର୍ଷକ ପରେ ଏହି ଜମାକୁ ଉଠାଯାଇପାରେ। ଏଥିପାଇଁ ଶହେଟଙ୍କାରେ ୫ଟଙ୍କା ସୁଧ କମ୍ ମିଳେ।

**( ଙ ) ପନ୍ଦର ବର୍ଷିଆ ସର୍ବସାଧାରଣ ପ୍ରୋଭିଡ଼େଣ୍ଟ ଫଣ୍ଡ ଜମା**: ମାସକୁ ୧ ଶହ ଟଙ୍କା ଅତିକମ୍‌ରେ ରଖାଯାଏ। ବର୍ଷକୁ ୬୦ ହଜାର ଟଙ୍କା ଅତି ବେଶି ରହିପାରେ। ବର୍ଷକୁ ଶତକଡ଼ା ୧୨ ଟଙ୍କା ଚକ୍ରବୃଦ୍ଧି ହାରରେ ସୁଧ ମିଳେ। ଏହି ଜମା ମାସକୁ ମାସ ରଖାଯାଏ। ବର୍ଷକୁ ଥରେ ମଧ୍ୟ ରଖାଯାଇପାରେ।

**( ଚ ) ଡାକଘର ସମୟ ଜମା**: ମାସକୁ ୫୦ ଟଙ୍କା ବା ତାଠାରୁ ବେଶି ରଖାଯାଏ। ଏହି ଜମାର ସମୟ ୨ ବର୍ଷ, ୩ ବର୍ଷ ଓ ୫ ବର୍ଷ। ଏଥିରେ ସୁଧ ବର୍ଷକୁ ଶହେ ଟଙ୍କାରେ ୧୦ ଟଙ୍କା ୫୦ ପଇସାଠାରୁ ୧୨ ଟଙ୍କା ୫୦ ପଇସା ଯାଏ ମିଳେ।

**( ଛ ) ୫ ବର୍ଷିଆ ଡାକଘର ଧାରାବାହିକ ଜମା :** ଅତିକମ୍‌ରେ ମାସକୁ ୧୦ଟଙ୍କା ଜମା ରଖାଯାଏ । ଏହି ଜମା ୫ ବର୍ଷ ପାଇଁ କରାଯାଏ । ଏଥିରେ ଶହେ ଟଙ୍କାରେ ୧୨ ଟଙ୍କା ୫୦ ପଇସା ସୁଧ ମିଳେ ।

**( ଜ ) ଡାକଘର ସଞ୍ଚୟ ଯୋଜନା :** ସର୍ବନିମ୍ନ ୨୦ ଟଙ୍କା ଏଥିରେ ଜମା ଦେଇ ଖାତା ଖୋଲାଯାଏ । ଅତି ବେଶିରେ ଜମା ୫୦ ହଜାର ଟଙ୍କା ରଖିପାରେ । ଏଥିପାଇଁ ଜମାକାରୀକୁ ବର୍ଷକୁ ଶହେ ଟଙ୍କାରେ ୫ ଟଙ୍କା ୫୦ ପଇସା ସୁଧ ମିଳେ ।

**( ଝ ) ଜାତୀୟ ସଞ୍ଚୟ ସାର୍ଟିଫିକେଟ :** ଅତିକମ୍‌ରେ ଶହେ ଟଙ୍କା ରଖାଯାଏ, ଭିନ୍ନ ଭିନ୍ନ କିସମର ସାର୍ଟିଫିକେଟ୍ ରହିଛି । ଶହେ ଟଙ୍କିଆ ସାର୍ଟିଫିକେଟ୍ ମିଳେ । ୫ ଶହ, ୧ ହଜାର, ୫ ହଜାର ଟଙ୍କାର ସାର୍ଟିଫିକେଟ୍ ମିଳିପାରେ । ଶହେ ଟଙ୍କାର ବର୍ଷକୁ ବାରଟଙ୍କା ସୁଧ ମିଳେ ।

ଡ଼ାକଘର ଗୁଡ଼ିକରେ ଏହି ଜମା ବିଷୟରେ ସବୁ ବିବରଣୀ ପାଇ ପାରିବା । ଅବସର ନେଉଥିବା ଲୋକମାନଙ୍କ ପାଇଁ ସୁବିଧା ରହିଛି । ଜମାକାରୀ ତା'ର ଉତ୍ତରାଧିକାରୀ ବାଛିପାରେ । ତା'ର ମୃତ୍ୟୁପରେ ମନୋନୀତ ବ୍ୟକ୍ତି ଟଙ୍କାପାଏ ।

ଏହାଛଡ଼ା ଗାଁରେ ରହୁଥିବା ସ୍ତ୍ରୀ ଲୋକମାନଙ୍କର ଆର୍ଥିକ ଉନ୍ନତି ପାଇଁ କେନ୍ଦ୍ର ସରକାର ମହିଳା ସମୃଦ୍ଧି ଯୋଜନା ୧୫ ଅଗଷ୍ଟ ୧୯୯୩ ମସିହାରୁ ଆରମ୍ଭ କରିଛନ୍ତି । ଏହି ଯୋଜନା ଅକ୍ଟୋବର ୨ ତାରିଖ ୧୯୯୩ ମସିହାରୁ ଲାଗୁ କରାଯାଇଚି ।

ଆମ ଦେଶର ଗାଁମାନଙ୍କରେ ଏକ ଲକ୍ଷ ବତିଶ ହଜାର ଡାକଘର ରହିଛି । ମହିଳା ସମୃଦ୍ଧି ଯୋଜନା ଦ୍ଵାରା ଗାଁ ଗହଳର ସ୍ତ୍ରୀ ଲୋକେ ଘର ଖର୍ଚ୍ଚରୁ ବଳକା କରି ଧନ ସଞ୍ଚୟ କରିପାରିବେ । ଏହି ଯୋଜନାରେ ୧୮ ବର୍ଷରୁ ଊର୍ଦ୍ଧ୍ଵ ଯେକୌଣସି ମହିଳା ନିଜ ଗାଁ ଡାକଘର ଜମାଖାତା ଖୋଲିପାରିବେ ।

ଯଦି ସେ ଗୋଟିଏ ବର୍ଷରେ ୩୦୦ ଟଙ୍କା ଜମା ରଖନ୍ତି, ତେବେ ସରକାର ତାଙ୍କୁ ଶହେ ଟଙ୍କାରେ ୨୫ ଟଙ୍କା ପ୍ରୋତ୍ସାହନ ଦେବେ । ଏହି ଜମାରୁ ଜମାକାରୀଣୀ ବର୍ଷକୁ ଦୁଇଥର ଟଙ୍କା ଉଠାଇପାରିବେ । ଏଥିପାଇଁ ଶହେ ଟଙ୍କାରେ ବର୍ଷକୁ ୧୨ ଟଙ୍କା ସୁଧ ଦେବେ । ଅତିକମ୍‌ରେ ଜମାଟଙ୍କା ମାସେ ରହିବା ଦରକାର ।

ଅଧିକ ଜାଣିବାକୁ ଡାକଘର ରହିଛି । ପ୍ରତ୍ୟେକ ରାଜ୍ୟରେ ଜଣେ କମିଶନର ଅଛନ୍ତି । ସେ ଏହି କାର୍ଯ୍ୟକୁ ତଦାରଖ କରନ୍ତି ।

ବୁଝିଲେ ଶରତ ଭାଇ; ଆମ ଗାଁ ହେଉଛି ସଞ୍ଚୟ ଗାଁ । ଏଠାରେ ସଞ୍ଚୟ ପାଇଁ ଲୋକଙ୍କର ଉତ୍ସାହ ରହିଛି । ପ୍ରତ୍ୟେକ କିଛି ନା କିଛି ସଞ୍ଚୟ କରୁଛନ୍ତି । ଯେ ନିତି ମୂଲ ଲାଗି ପେଟ ପୋଷୁଛି, ସେ ମଧ ଜମା କରୁଛି । ସେଇଥି ପାଇଁ ଆମକୁ ପ୍ରଶଂସାପତ୍ର ମିଳିଛି ।

ଶରତ ବାବୁ ମମତା ଠାରୁ ଏସବୁ ବୁଝି ଭାରି ଖୁସି ହେଲେ । ସେ ବିଶେଷ ଜମା ବିଷୟରେ ଜାଣି ନ ଥିଲେ । ଆଉ ଅଧିକ ଜାଣିବାକୁ ତାଙ୍କର ଇଚ୍ଛା ଥିଲା ।

ମମତା କହିଲା, ଶରତ ଭାଇ ! ଏହା ପରେ ଜୀବନ ବୀମା ରହିଛି । ଏହି ବୀମା ପ୍ରତ୍ୟେକ ଲୋକକୁ ସୁରକ୍ଷା ଦିଏ । ଚାଲନ୍ତୁ; ବୀମା ବିଷୟରେ ଆମ ଗାଁ ଏଜେଣ୍ଟଙ୍କଠାରୁ ବୁଝିବା ।

ଯଦୁବାବୁ ହେଉଛନ୍ତି ବୀମା ଏଜେଣ୍ଟ । ଗାଁ ଗାଁ ବୁଲି ବୀମା ସଂଗ୍ରହ କରନ୍ତି । ଲୋକମାନଙ୍କୁ ସୁରକ୍ଷା ବିଷୟରେ ବୁଝାନ୍ତି ।

ଯଦୁବାବୁ ମମତା ଓ ଶରତବାବୁଙ୍କୁ ବୀମା ବିଷୟରେ କହିଲେ । ବୀମା କାହିଁକି କରିବେ, ବୀମା କଲେ ଲାଭ କ'ଣ ଓ ଏଥିରେ କି ପ୍ରକାର ସୁବିଧା ରହିଛି ପ୍ରଥମେ ଜାଣିବା ।

ଜୀବନ ବୀମା ହେଉଛି ମଣିଷ ଜୀବନ ପାଇଁ । ମଣିଷ ଜୀବନ କେତେବେଳେ ଶେଷ ହେବ କିଏ କହିପାରିବ ? ଏହା ପାଣି ଫୋଟକା ପରି, ଆଜି ଜୀବନ କାଲିକି ନାହିଁ । ପିଲାମାନେ ବଞ୍ଚିବେ । ପାଠ ପଢ଼ିବେ । ବାହା ହେବେ । ଏହାକୁ ନଜରରେ ରଖି ବୀମା କରାଯାଏ ।

ଆମେ ରାସ୍ତାରେ ଯାଉଛେ । ଦୁର୍ଘଟଣା ଘଟିଲା । ରୋଗ ହେଉଛି, ଭଲ ହେଲାନି । କିଏ କେତେ ବର୍ଷ ବଞ୍ଚିବ, ତାହା କେହି କହି ପାରିବେ ନାହିଁ। ଏହାକୁ ଆଖିରେ ରଖି ବୀମା କରାଯାଏ । ଅଳ୍ପ ଅଳ୍ପ ଟଙ୍କା ଜମା ରଖାଯାଏ । ଏହା ଉପରେ ସୁଧ ମିଳେ । ବୋନସ୍ ମଧ୍ୟ ଦିଆଯାଏ ।

ବୀମାକାରୀ ବୀମା ପୂରିବା ପୂର୍ବରୁ ମରିଗଲେ ପୂରା ଟଙ୍କା ତାଙ୍କର ଉତ୍ତରାଧିକାରୀଙ୍କୁ ମିଳେ । ଏକାଥରକେ ସବୁ ଟଙ୍କା ଦେବାକୁ ହୁଏ ନାହିଁ ।

ମନେକରନ୍ତୁ କେହି ଦଶହଜାର ଟଙ୍କାର ବୀମା କଲେ । ୨୦ ବର୍ଷ ଭିତରେ ଏହି ଟଙ୍କା ଦେବାକୁ ହେବ । ମାସକୁ ମାସ, ଛ'ମାସରେ ବା ବର୍ଷକରେ ଏହା ଦିଆଯାଇପାରେ । ତିନିବର୍ଷ ଦେବାପରେ ହଠାତ୍ ବୀମାକାରୀ ମରିଗଲେ, ବୀମାର ସମୁଦାୟ ଟଙ୍କା ତାଙ୍କ ପରିବାରକୁ ମିଳେ । ଏହା ଉପରେ ସୁଧ ଓ ବୋନସ୍ ମିଳେ ।

ଏହା ବ୍ୟତୀତ କୃଷିବୀମା ଯୋଜନା ରହିଛି । ବୀମା କମ୍ପାନୀମାନଙ୍କର ଗ୍ରାମୀଣ ବୀମା ରହିଛି । ଗୃହପାଳିତ ପଶୁମାନଙ୍କୁ ଏହି ବୀମା ଲାଗୁ ହୁଏ ।

ବନ୍ୟା ହୁଏ, ବାତ୍ୟା ଆସେ, ଘର ପୋଡ଼ିଯାଏ, ରୋଗ ଧରେ, ଦୁର୍ଘଟଣା ଘଟେ, କେହି ଅକର୍ମଣ୍ୟ ହୁଏ । କେହି ମରିଯାଏ । ସମୟ ସମୟରେ ଯାନ୍ତ୍ରିକ ଦୁର୍ଘଟଣା ଘଟେ । ଫସଲରେ ପୋକ ଲାଗେ । ଧୋଇ ହୋଇଯାଏ । ଚୋରି ହୋଇପାରେ । ଡକାୟତି ଘଟିପାରେ ।

ବିପଦ ସବୁବେଳେ ରହିଛି । କେତେବେଳେ ଆସିବ କିଏ କହିବ ? ଟିକିଏ ସାବଧାନ ନ ହେଲେ ହଇରାଣ ।

ଅଳ୍ପ ଟଙ୍କା ଦେଇ ବୀମା କରିଥିଲେ, ତାହା କେତେ କାମରେ ଲାଗେ । ବୀମାର ବିଭିନ୍ନ ଯୋଜନା ରହିଛି । ସେଥିପାଇଁ ଏଜେଣ୍ଟମାନେ ଅଛନ୍ତି । ଅଫିସ୍ ରହିଛି । ଆପଣ ଯାଇ ଆଲୋଚନା କରିପାରିବେ ।

ଫସଲ ବୀମା, ଗୃହପାଳିତ ପଶୁ ବୀମା, ଯାନବାହାନ ବୀମା କରାଯାଏ ।

ବୀମା ହେଉଛି ସୁରକ୍ଷା । ମଣିଷ ପାଇଁ ଭବିଷ୍ୟତର ନିରାପତ୍ତା । ମନରେ ଚନ୍ତା ନାହିଁ । ଭବିଷ୍ୟତ ପାଇଁ ଦକ ନାହିଁ ।

ଶରତ ବାବୁ ସବୁ ଶୁଣିଲେ । ଆଗରୁ ଯଦି ସେ ଏକଥା ଜାଣିଥାନ୍ତେ, ଆଜି ହଇରାଣ ହେବାକୁ ପଡ଼ିନଥାନ୍ତା ।

ମମତା କହିଲା, ଶରତ ଭାଇ ! ଏବେ ବି ସମୟ ଅଛି । ଏ ବେଳୁ ଭାବିବା । ଯେମିତି ଛୋଟ ପରିବାର, ସୁଖୀ ପରିବାର, ସେମିତି ଆଜିର ସଞ୍ଚୟ, କାଲି ପାଇଁ ସୁରକ୍ଷା ।

ପିମ୍ପୁଡ଼ିକୁ ଦେଖନ୍ତୁ । କେତେ ଛୋଟ ଜୀବ । କିନ୍ତୁ ବୁଦ୍ଧି ପ୍ରଖର । ବର୍ଷାଦିନ ଆସିବ । ବର୍ଷରେ ଖାଇବାକୁ ମିଳିବନି । ଆଗରୁ ଗାତରେ ସଞ୍ଚୟ କରି ରଖେ ।

ସଞ୍ଚୟ କରିବା ନିହାତି ଆବଶ୍ୟକ । ଗାନ୍ଧିଜୀ କହିଥିଲେ, କୁଟି ଖାଅ, କାଟି ପିନ୍ଧ । ଏହା କରିବା ଫଳରେ ନିଜ କାମ ନିଜେ କରିପାରିବା ।

ସଞ୍ଚୟ କରିବା ଠିକ୍ ସେହିପରି । ଆଜି ଯୁବକ, କାଲି ବୁଢ଼ା, ସବୁଦିନେ କେହି କାମ କରି ପାରିବନି । ବୟସ ଚାଲିଯିବ । ବଳ ହଟିଯିବ । ରୋଗ ମାଡ଼ିବସିବ । ଆଗରୁ ସେଥିପାଇଁ ସଞ୍ଚୟ କରିବାକୁ ହେବ ।

କାହା ଉପରେ ନିର୍ଭର ନାହିଁ । ସୁଖରେ ଆନନ୍ଦରେ ରହିପାରିବା । ଏଥିପାଇଁ ସବୁ ରକମର ସୁବିଧା ମଧ୍ୟ ହେଲାଣି । ଟଙ୍କା ସୁନାକୁ ଘରେ ନ ରଖି ବ୍ୟାଙ୍କରେ ରଖିପାରିବା । ଡାକ ଘରେ ଜମା ଦେଇପାରିବା । ବୀମା କରିପାରିବା ।

ଏହା ଆମକୁ ଅଧିକା ଟଙ୍କା ଦେବ । ସୁଧ ଆକାରରେ ମିଳିବ । ବସି ଖାଇଲେ ନଈବାଲି ସରେ । ଯେତେ ଆୟ କରିବ, ସବୁ ବ୍ୟୟ କଲେ ସଞ୍ଚୟ ହେବ ନାହିଁ ।

ଭବିଷ୍ୟତ ଅନ୍ଧକାର ହୋଇଯିବ । କରଜ କରି ମାନସିକ ଦୁଃଖ ମିଳିବ ।

ମମତା କହିଲା, ଆପଣ ଆମ ଘରକୁ ଦେଖିଲେ । ଆମେ ମା'ଙ୍କଠାରୁ ଶିଖିଛୁ । ତାକୁ ଆମେ କାମରେ ଲଗାଉଛୁ । ଯାହା ଶିଖିବା, ତାକୁ କାମରେ ଲଗାଇବା । ନିଜେ ନିଜ ଗୋଡ଼ରେ ଛିଡ଼ା ହେବା । ଅନ୍ୟକୁ ଛିଡ଼ା ହେବାରେ ସାହାଯ୍ୟ କରିବା ।

ତେବେ ଦେଶର ଉନ୍ନତି ହେବ । ପ୍ରଗତି ହେବ । ବର୍ତ୍ତମାନ ପ୍ରତ୍ୟେକ ଗାଁ ରେ ମହିଳା ସମିତି । ପୌଢ଼ ଶିକ୍ଷା କେନ୍ଦ୍ର । ସମବାୟ ସମିତି । ବ୍ୟାଙ୍କ, ଡାକଘର, ଶିକ୍ଷାନୁଷ୍ଠାନ ହେଲାଣି । କେବଳ ମନ ଦରକାର ।

ମନ ଥିଲେ ସବୁ କାମ କରିହୁଏ । ମନ ଥିଲେ ସଞ୍ଚୟ କରିହୁଏ । ନିଜ ଭିତରେ ଆତ୍ମ ବିଶ୍ୱାସ ରହିଛି । ତାକୁ ଜାଣିଲେ ହେଲା । ଗପଟିଏ ଶୁଣିବା ।

ପରମହଂସ ଶ୍ରୀରାମକୃଷ୍ଣ ଏ ଗପଟିକୁ କହିଥିଲେ । ଥରେ ଜଣେ ଲୋକ ହୁକା ପିଇବାକୁ ଚାହିଁଲା । ସେତେବେଳେ ରାତି । ହୁକା ପାଇଁ ନିଆଁ ଦରକାର । ତା' ଘରେ ନିଆଁ ନ ଥିଲା । ସେ ପଡ଼ୋଶୀ ଘରକୁ ଗଲା ।



କବାଟ ଠକ୍ ଠକ୍ କଲା । ପଡ଼ୋଶୀ ଉଠିଲେ । କବାଟ ଖୋଲିଲେ । ପଚାରିଲେ, କ'ଣ ଦରକାର ।

ଲୋକଟି କହିଲା, ହୁକା ପାଇଁ ନିଆଁ ।

ପଡ଼ୋଶୀ ହୋ ହୋ ହୋଇ ହସି ଉଠିଲେ । ସେ ଲୋକଟିକୁ ଚାହିଁଲେ ।

କହିଲେ, ତୁମ ପାଖରେ ନିଆଁ ଅଛି । ଅଥଚ ତୁମେ ନିଆଁ ଖୋଜି ଆସିଛ ।

ଲୋକଟି ହାତରେ ଲଣ୍ଠନ ଧରି ଯାଇଥିଲା ।

ସବୁ ମଣିଷ ଭିତରେ ଆଲୁଅ ଅଛି । କେବଳ ଜାଣିବା ନେଇ କଥା । ଜାଣିଲେ କାମରେ ଲଗାଇ ପାରିବା ।

ଶରତ ମମତା ମୁହଁକୁ ଚାହିଁଲେ । ଦୀପ ଶିଖାଟିଏ ଜଳୁଛି । ଆଲୁଅ ଦେଉଛି ।



ଗାଁଟି ସାରା ଆଲୁଅ ହୋଇଗଲାଣି । ସେ ଆଜି ସେଇ ଆଲୁଅର ସନ୍ଧାନ ପାଇଲେ ।

